# ।। ଭାନୁମତୀର ଦେଶ ।।

ଦ୍ୱିତୀୟ ସଂସ୍କରଣ


ଲେଖକ :

**ପଦ୍ମଶ୍ରୀ ସଚ୍ଚିଦାନଂଦ ରାଉତରାୟ**



ପ୍ରକାଶକ :

**ଜଗନ୍ନାଥ ରଥ**

ବିନୋଦ ବିହାରୀ, କଟକ-୨

ପ୍ରକାଶ କାଳ

**୧୯୭୭**

ମୂଲ୍ୟ :

**ଦୁଇଟଂକା ମାତ୍ର**

[illegible]

ମୁଦ୍ରଣ :

**ସାଥୀ ପ୍ରିଂଟିଂ ପ୍ରେସ୍**

ଓଡ଼ିଆ ବଜାର, କଟକ-୧

# ସୂଚୀ

# ଭାନୁମତୀର ଚିତ୍ର

ଭାନୁମତୀର ଶ୍ୟାମ ସ୍ନିଗ୍ଧ ଚିତ୍ର ।
ମନ୍ଥିରେ ତାର ଏପ୍ରିଲ୍ ସକାଳର
ନେଳିଆ ଫୁଲର ଚଉତରା ।
ତା ଭିତରେ ସେଦିନ ନିର୍ଜନ ଡାକବଙ୍ଗଳା,
ଅତୀତ ପରି ଧୂସର
ଭବିଷ୍ୟତ ପରି ଅସ୍ପଷ୍ଟ
ତା' ଚଉପାଶ ଘେରି
ଛତାପ୍ଳିତ ମାଳ ଝାଉଁ ବନ ।
ଶୀତ ଶେଷର କମଳା ରଂଗର ଖରା
ମନ ଭିତରେ ଲିପି ଦେଉଥିଲା
କେଉଁ ଅତୀତର
ସୁନେଲି ସ୍ମୃତିର ଚେହେରା !!

ବାରଂଡାରେ ଏକ ଆରାମ ଚୌକିରେ ବନିତା
ବୋଧହୁଏ ପ୍ରସାଧନ ପାଇଁ ପ୍ରସ୍ତୁତ ହେଉଥିଲା ।
ତାର ମୁକ୍ତ କେଶ, ଶ୍ଲଥ ଶାଢ଼ୀ-ରୁ ତାର ସୂଚନା ।
ତାର ପରିଚୟ ପୁଷ୍ଟି ସଂକୋଚନ ଭୂର୍ବରୁ
ଖୋଲି, ପ୍ରସାରଣଶୀଳ ଦେହ-ଲତା ॥

॥ ଦୁଇ ॥

ଘର ଭିତରେ ତା ମା'
ସେଇ ଗ୍ରାମର ଶିକ୍ଷୟିତ୍ରିଙ୍କ ସଂଗେ
କଣ କଥାବାର୍ତ୍ତା ହେଉଥିଲେ ।
ବେଳେ ବେଳେ ଦୁହିଁଙ୍କର
କଥାର ଇସାରା
ବିନିତା ମନରେ ଯେ ତରଂଗ ତୋଳୁ ନ ଥିଲା,
ତା ନୁହେଁ ।
ଦୁହେଁ ନାନା ଶବ୍ଦ ବିନିମୟରେ ବିହ୍ୱଳ ।
ବାର୍ତ୍ତାମୁଖର ॥

ଦୁଇ ଦିନର ମୁସାଫିର୍ ସେମାନେ
ଆସିଛନ୍ତି ସହରରୁ
ବଡ଼ଦିନ ଛୁଟିରେ ମନ ଓ ହାଓ୍ୱା ବଦଳାଇବାକୁ ।
ହିଁ, ହାଓ୍ୱା ବଦଳାଇବାକୁ ।
ତରଂଗର ନିମଂତ୍ରଣରେ ॥

ତରଂଗ କହେ, ସେମାନଙ୍କ ଗାଁ
ସୁଂଦରଗଡ଼
ଏଇ ନାଁର
ଜୀବଂତ ପ୍ରତୀକ ।
ଏ ଗ୍ରାମର ସରୁ ସରୁ ପଥ,
ପାହାଡ଼ର ଧାରେ ଧାରେ
ଭାନୁମତୀର ଶସ୍ୟାବୃତ କ୍ଷେତରେ
ନାଲି କନିଅର ଆଉ ସୁନାରି ଫୁଲର
ନାଲ୍ ନାଲ୍ ହଳଦିଆ ଛବି
ମନରେ ଜଗାଇ ଦିଏ
ଏପ୍ରିଲ୍‌ର ଆଶ୍ଚର୍ଯ୍ୟ ନାଟକ ।
ସେ କବି କି ନା !!

॥ ତିନି ॥

ବନତାର ସତେଜ ଧ୍ୱଂଶଚ
ସେ ଏଇ ଗ୍ରାମର ପ୍ରଥମ ଦର୍ଶନରେ-ଇ କହି ଉଠିଚି—
ସତରେ କଂତ୍ର ଚମତ୍କାର,
ଘଣ ଚମତ୍କାର ତମ ଗାଁ,
ସାର୍ଥକ ହେଇଚି ତାର ନାଁ
ସୁଂଦରଗଡ଼ ॥

ଓଟର ବଂକା କୁଜ ପରି
ଏଇ ସବୁ ଧୂମଂତ ପାହାଡ଼,
ଯେମିତି ଗୋଟାଏ ଗୋଟାଏ
ମସ୍ତବଡ଼ ପିଲସଜ ।
ତା ଉପରେ ସକାଳ ଆଉ ସଜ ବେଳେ
ସୂର୍ଯ୍ୟ-ଦୀପ ଜଳେ ।
ଆଉ ଯେଉଁ ଦଗ-କ୍ଷେତ୍ରର ତାଲଗଛ,
ହନୁମଣ୍ଡାର ଧାରେ ଧାରେ ଫଳଭରା ଖଜୁରୀର
ବିସ୍ତୀର୍ଣ୍ଣ ପାହାଚ
ସେ ସବୁ ଯେମିତି ଗୋଟିଏ ଗୋଟିଏ ବଡ-ଖୁଂବ
କାରଣ ତା'ର ଉପରେ ତ ପୂର୍ଣ୍ଣିମାର ସୁବର୍ଣ୍ଣ ଆରଂଭ,—
ଚଂଦ୍ରାବତୀ ଜଳେ ॥

ଫାଲ୍‌ଗୁନର ଶୁଭ୍ର ସ୍ୱପ୍ନ
ସଜାଇ ଦିଏ ଡାକବଂଗଳା ହତାରେ
ପ୍ରସ୍ଫୁଟିତ କୋରୁହାଁ ଆଉ ନିମ
ଫୁଲର ସେଣିକ —
ହସି ଉଠେ ହନୁମଣ୍ଡାର ଲାଲ କୁଛିମ ।
ସ୍ରୋତରେ ତାର ବାଜି ଉଠେ କଥା,
ତରଂଗ କହେ ଦେଖିଲଣି
କି ସୁନ୍ଦର ଏ-ସବୁ ଛନତା !
ଯେମିତି ଫୁଲର ଏକ ପ୍ରଦର୍ଶନୀ ॥

# ॥ ଘର ॥

ବନଚାରୀ ଆଶ୍ଚର୍ଯ୍ୟ ଆଖିରେ
ଲାଗେ ସେ କି ସ୍ୱପ୍ନର ଅଂଜନ,
ତା' ମନର କଠିନ ରକ୍ତଚଂଦନ
ଗଛରୁ ଫୁଟି ବାହାରେ ମହକ,
ଦେହେ ଦେହେ ଲାଗେ ତାର କି ଅପୂର୍ବ
ବେପଥୁ , ଚମକ !!

ସହରେ ବଢ଼ିଚ ସେ ତ
ଇଟା ଆଉ ସିମେଂଟ୍ ଭିତରେ,
ଦେଖି ନାଇ ସୂର୍ଯ୍ୟୋଦୟ ଭଲ କରି ଥରେ
ଚାଠି ଲାଗିଚି ଲୁହା ଆଉ ଇସ୍ପାତର ପ୍ରେତ ।
ପାଇ ନାହିଁ ମୁକ୍ତ ତାର ଦୃଷ୍ଟିକୋଣ,
ଅଭିଭୂତ ମନର କଳସୀ ।
ତେଣୁ ଭାବେ ବସି
ଏ କି ମୁକ୍ତି ! ସେ କି ସମ୍ଭବ ?

ଭାନୁମତୀ ଜଳର କଲ୍ଲୋଳ
ତା ମନରେ ଦେଇଯାଏ ଯେଉଁ ରୂପକଥା ଦେଶର
ସମାଚାର,
ତାକୁ ସେ ସନ୍ଦେହ କରେ ।
କିଂତୁ ଭଲପାଏ ॥

ଭଲପାଏ—
ସହରରେ
ଦୁଇବେଳା ପାଖ ଘରେ
କାନଫଟା ସ୍ୱର ଗ୍ରାମୋଫୋନ !
ପ୍ରତିବେଶୀ ଦୋକାନରେ
ଭିଡ଼, ଗୋଳ ।
ଟ୍ରାଫିକ୍‌ର ଘର୍ଘର ହୁଂକାର
ରାସ୍ତାର ଆୱାଜ ।
ପେଟ୍ରୋଲ, ଗୋଲାପଫୁଲ ଓ ଆଲକାତରା ଗଂଧ ॥

॥ ପାଞ୍ଚ ॥

ତା' ଆଖିରେ ସତ ଆଜି
ଖଂଡାଧାର ଜହ୍ନମଣ୍ଡା ସ୍ୱପ୍ନ ।
ମଣିନାଗ ପାହାଡ଼ର ଶିଖ,
ଶିମିଳି ଓ ପଳାଶର ଛଡ଼ା ଛଡ଼ା ପଶାପାଳି ଛକ ।
ଭୁଲାଇଚି ତାକୁ ସବୁ ପଛର ତାଗିଦ ॥

ଦୂରରେ କେତୋଟି ଘର,
ତାକୁ ଲାଗେଁ ସୁନାଖଳା ତୋଟା,
ଧାଡ଼ ଧାଡ଼ ବଣ ବୁଦା, ଗିଲ ଗଛ,
ବେତ ପୁଣି କଂଟା ।
ରଂଧ୍ରହୀନ ବାଉଁଶର ବାଗ,
ଶୁଣାଯାଏ ସେଠି ରୋଜ୍ ମଖମଲଦେହୀ ଏକ ବାଘ
ପାଣି ପିଏ, ପିଚ୍ଛ କୂଳରେ
ଝର ଜଳେ ଦେଖି ନିଜ ଛାଇ—
ଲାଂଜ ପିଟେ; ନଖ ଘଷେ
ନିଜ ପ୍ରତି ନିଜେ ଆସେ ଧାଇଁ ।
ଧାଡ଼ ଧାଡ଼ ଜଂଗଲର ଫୁଲ ।
ମାଛକାଣ୍ଡ ମେଘବର୍ଣ୍ଣ ତଳେ
ଫୁଟି ଝଡ଼େ
ବଣର ମହୁଲ ॥

ସେ-ଦିନ ତରଂଗ, ବନ୍ୟା, ବନତାର ମାଆ
ବୁଲୁଥିଲେ ନଈକୂଳରେ ।
ନଈ ଜଳରେ
ପାଲ ଟେକା ଅସଂଖ୍ୟ ଅସଂଖ୍ୟ ନାଆ
କରୁଥିଲା ଯାଆ ଆସ ।
ବନତାର ନୀଳ ଆଖିରେ
ସନ୍ଧ୍ୟାର ରହସ୍ୟ ।
ତାର ଦୀର୍ଘ ବେଣୀରେ ଅମାବାସ୍ୟାର
କୁଂଚିତ ଅଂଧାର ।

॥ ଛଅ ॥

ତା'ର ମାଛ ପରି ତୀକ୍ଷ୍ଣ ଭୂରୁର
ଗାଢ଼, ନୀଳ ତାର
ବେଳେ ବେଳେ ଛୁଇଁ ଆସୁଥିଲା କପାଳକୁ ॥

ରାସ୍ତା ପାଖୁ
ରକ୍ତ କରବୀ ଗଛରୁ
ଗୋଟିଏ ଫୁଲ ତୋଳି ଆଣି
ତରଂଗ ଖୋସିଦେଲା ବନଜା ବେଣୀରେ,
ତା ମା' ଟିକଏ ଆଗେଇ ଯିବାର ସୁଯୋଗ ନେଇ ।
ତା ପରେ କିଛି ନ ଜାଣିଲା ପରି
ବୁଲିପଡ଼ି ପଛରୁ
ସେ ଚାଲିଲା ଆଗକୁ ପଳସି
ଅସ୍ୱାଭାବିକ ବେଗରେ
ନିଜର ପ୍ରତିବାଦରେ ।
ବନଜା ହସି
ପ୍ରାପ୍ତିସ୍ୱୀକାର କଲା ।
ଜଣାଇଲା ମୌନତାରେ—
ଘାନୁମଣ୍ଡି ଦେଶର ଏ ରକ୍ତ-କରବୀ
ମୁଁ ଗ୍ରହଣ କଲି ମୋ ମସ୍ତକରେ ॥

କିଛି ଦୂର ଯାଇ ଗୋଟାଏ ବିରାଟ ପଥର ଉପରେ
ସେମାନେ ବସିଲେ ।
ଘାନୁମଣ୍ଡି କୋଳରେ ସୂର୍ଯ୍ୟାସ୍ତ ।
ଚାରିଆଡ଼େ ଇଂଦ୍ରଧନୁର ରଂଗ ।
ବନଜା କହିଲା,—ତରଂଗ !
ଏଇ ବୋଧେ ଅସ୍ତ ସୂର୍ଯ୍ୟର ଦେଶ ।
ଏଇଠି ବୋଧେ ସାରା ଦିନର କ୍ଲାନ୍ତି
ହୋଇଯାଏ ଶେଷ ।
ଏଇଠି ବୋଧହୁଏ ସ୍ୱପ୍ନର ସୁନା-କାଠି ଲାଗି
ରାଜକୁମାରୀ ନିଦ୍ରା ଯାଏ ।

॥ ସାତ ॥

ଜହ୍ନ ଆଜି ଉଠେ ନା ।
ନା କ'ଣ ?

ତରଂଗ କହିଲ,—ଉଠିବାର ସମୟ ହେଲେ ତ !
ସେଥିପାଇଁ ଅପେକ୍ଷା କରିବାକୁ ହେବ ।
କେବେ ସେ ଲଗ୍ନ ?

ବନଜାର ମା' କହିଲେ, ତମ କଥା ସବୁ ଲାଗୁଚି
କେମିତିକା ଖାପଛଡ଼ା କେଜାଣି ।
ଆଜିକାଲି ପାଠ୍ୟପୁସ୍ତକରୁ ସେ ସବୁ ରୂପକଥା
ଉଠି ଗଲାଣି ।
ଆମେ ଏଣିକି ତଳ କ୍ଲାସରେ ଯେଉଁ ସବୁ ବହି
ପଢ଼ାଉଚୁଁ,
ସେ ସବୁର ନୂଆ ଧରଣ,
ଭିନ୍ନ ମନର ଗଢ଼ଣ ।
ସେଥିରେ ନାଇ ମଧୁମାଳାର ଗପ,
କେଶବତୀ କନ୍ୟାର ପ୍ରଳାପ ।
ସୁନା ପଂରୁଆ ଭିତରେ ସେ ଯେଉଁ
ବାର ହାତ ବାଳର କାହାଣୀ
ଜେଜେମାଂକ ମୁହଁରୁ ଶୁଣି ଶୁଣି
ଆମେ ବଡ଼ ହୋଇଚୁଁ,
ସେ ସବୁ କ୍ରମେ ଭୁଲିଗଲୁଣି ।
ସେଇ କାଚ କରତ କଥା—ପୁଣି ଯେଉଁ ମାଲୁଣୀ
ନିତି ନିତି ଫୁଲ ବିକି ବୁଲେ
ସେ ସବୁ କଥା ଭୁଲିଗଲେଣି
ଆଜିକାଲିକା ପିଲେ ।
ତେଣୁ ତାଂକ ମନରୁ ସ୍ୱପ୍ନ ଯାଉଚି ଲିଭି,
ନାଇଁଯାଉଚି ଦିଗଂତପ୍ରସାରୀ ସବୁଜ
ବସୁନ୍ଧରା ବି ।

॥ ଆଠ ॥

ପଶ୍ଚିମର କ୍ଷତ୍ ଆରକ୍ତ ଆଜି ଗୋଧୂଳିତ
ଆକାଶର ନକ୍ସା ।
ବନତାର ଚଉଡ଼ା କପାଳ ପରି ପ୍ରଶସ୍ତ,
ଆଜି କୁଂକୁମିତ
ଚଂଚୁଟରେ ତାର ଝଲସି ଉଠେ ଯୌବନର
ଅସଂଭବ ପୀତ ରକ୍ତ ॥

ତାର ଗହମ ରଂଗର ଦୁଇ ଗାଲ,
ଆଜି ଯେଇ ଗାଲର ଝଲକ
ତୀବ୍ର ଇଙ୍କ୍
ରସାଣିତ ଶାଣିତ ପାଳସ,
ତାର ସମସ୍ତ ରଂଗୀନ୍ ଅନୁଭବର
ହାଲୁକା ନୌକାରେ ସେମାନେ ଯେମିତି ପାଲ,
ବପୁପର ସ୍ରୋତ ମୁହଁରେ ଛୁଟି ଚଳିତ,
ଜାଣି ନାଇ ଉଜାଣି,
ଅଛୁ ଖାଲି ସ୍ରୋତର ପ୍ରଖର ଗତି ସାଂଗରେ
ଅସହାୟ କରୁଣ ସାଳସ୍ ।
ତା ମନରେ ବଜୂଳର ତୀବ୍ର ଜୁଆର
ସଂଜ୍ଞାମିତ କରେ ।
ପ୍ରଭାବିତ କରେ,
ପ୍ରତିବେଶୀକୁ ॥

ତରଂଗ ବେଳେ ବେଳେ
ଚେରେଇ ଚେରେଇ ଦେଖୁଥିଲା
ବନତାକୁ,
ବନତାର ନେପଥ୍ୟରେ ।
ତା' ପରେ ସେ ଚାହିଁଥିଲା ଆକାଶକୁ
ଯେଉଁଠି ନୀଳ ମହଲର ଫୁଲଝର
ପଠାଉଥିଲା ନିମଂତ୍ରଣ
ନିଜର ପ୍ରକାଶ ଦ୍ଵାର ଦରବାରରୁ ॥

॥ ନଅ ॥

ସ୍ୱପ୍ନ କ'ଣ ପୁଣି ?
ହଠାତ୍ ଏକ କଣୋଣ୍ଢ ହରିଣୀ
ଝପ୍‌ସ୍ ପଦରେ ପହଁରିଗଲା
ସେଇ ବାଟରେ,
ଦୂରରେ ଶତା ବାଘୁଣୀର
ଆଇଁଷିଣିଆ ଦେହର ଆଘ୍ରାଣ
ତରଂଗ ବୁଝିପାରିଲା ।
ଉଠି ଛିଡ଼ା ହେଲା ।
ବନଭା ବ ଅଳସ ଭାଂଗି
ହାଇ ମାରି, ହାତ ଟଂଟେଇ
ଖୁଲ୍ ଖୁଲ୍ ହୋଇ ଉଠିଲା ॥

ତରଂଗ ଭାବୁଥିଲା—
ବନଭା ରୂପକଥାର ରାଜକୁମାରୀ ନୁହେ ।
ନୁହେଁ ବ ସେ ସପନରାଣୀ ।
ସେ ତାର ସହପାଠିନୀ ।
ବେଳେ ବେଳେ ସେ ଧରାଦେବାକୁ ଆସେ ।
କିଂତୁ ଧରୁ ଧରୁ ଯାଏ ସେ ପଳାଇ ।
ସେ ଯେମିତ ତା ମନର
ଘନ ବନର
କନକ ମୃଗୁଣୀ ।
କିଂବା ତା ମନର ନିଭୃତ ଆକାଶରେ
ଏକ ବନହଂସୀ ॥

ବେଳେ ବେଳେ ତା ପ୍ରାଣ କଂଦରରୁ ଶବ୍ଦ ଆସେ—
ଆଗୋ ମୃଗବଧୂ !
ହେ ମୋର ବଳାକା !
ନୁହଁ ମୁଁ ନୁହଁ ବାଟବଣା
ଏକଲା ପଥଗ୍ରସ୍ତ ।
ନୁହଁ ମୁଁ ଶିକାରୀ ।

॥ ଦଶ ॥

ଧନୁ ମୋର ଶିଥିଳତ ଶମୀ-ତରୁ କୁଂଜେ ।
ବଂଶୀ ମୋର ଖୋଜେ ନିଜ ସ୍ୱର
ଏଇ ବନର ମୁଁ କବ
ଏଇ ଦେଶରେ ମୋର ଘର !
ଏ ଯେଉଁ ରକ୍ତ-କରବୀ, ଆଉ
କୃଷ୍ଣଚୂଡ଼ାର ଦେଶ,
ଘନନୀଳର ମୂହାଣ ପାରେ
ଶରଦର ଯା' ଶେଷ ।
ମୁଁ ତାର ରୂପକାର ।
ତୁଳିରେ ମୋର ପାରିବ ଦେଇ
ଝିକିଏ ଖାଲି ରଂଗ
ପାରିବ ଦେଇ
ବଂଇଶୀରେ ମୋ ସ୍ୱର ?
ଆକାଶ ମୋର ଶୂନ୍ୟ ସ୍ଥିର
ଆଗୋ ବଣର ପକ୍ଷୀ
ପାରିବ ଉଡ଼ ? ପାରିବ ସତେ
କହ ନା ଛଂଦ ରଖି ।
ମେଲାଇ ଡେଣା ପାରିବ ଉଡ଼
ଆକାଶେ ମୋର ଥରେ
ଶୂନ୍ୟତାକୁ ପାଟିବ ତାର ଭରି ?
ଉଡ଼ିଯିବାର—
ଭାସିଯିବାର—
ଗୁଞ୍ଜିଯିବାର—
ମଧୁର କଳରୋଳେ ?

ଏ-ସବୁ ପ୍ରଶ୍ନର
ସେ ପାଇ ନା ଉତ୍ତର ।
କଂକୁ ପଚାରେ ଅଂତ୍ରାକୁ ଥର
ନିଜକୁ କେବଳ ।

॥ ଏଗାର ॥

ନିରୁତ୍ତରିତ
ସେଇ ପ୍ରଶ୍ନର କରୁଣ କୁହୁକେ
ପାଇଛି ସେ ଖୋଜ ସମାଧାନ ।
ଖାଲି ଏକ ପଗୁରିବା ନିଶା
ଅସୀମ ଜିଜ୍ଞାସା,
ଅଭିଭୂତ କରିଅଛି ତାକୁ ।
ସେଥିରେ ସେ ପାଇଛି ତୃପ୍ତି
କିଂତୁ ପାଇ ନାଇ ମୁକ୍ତି ।
ନିଜଠାରୁ ।

ପଦ୍ମରୁ ପଦ୍ମରୁ
ଆହା ! ଡାକୁ, ଡାକୁ, ପୁଣି ଡାକୁ, ଡାକୁ ॥

---

# ଝଡ଼ରେ କୃଷ୍ଣଚୂଡ଼ା

କାଲି ରଜନୀରେ ଝଡ଼ା ହୋଇଗଲା
କୃଷ୍ଣଚୂଡ଼ା ବନେ,
ଅନେକ ଝଡ଼ର ସ୍ପର୍ଶ ଲାଗିଲା
ବନଟା ଆଜି ତରଂଗର
ମନେ ମନେ ।।

ତରଂଗ ଭାବୁଥିଲା,
ଏଇ ବୋଧହୁଏ ରବୀଂଦ୍ରନାଥଂକ
ସବୁ ପାଇବାର ଦେଶ ।
ଏଇ ଜଗତର ଶେଷ ଦିଗ୍‌ବଳୟ ମୁହାଣ ପାରେ
ବୋଧହୁଏ ଫରାସୀ ସୁର୍‌ରିଆଲିଷ୍ଟଂକର
'ସବୁଜ ଚଂଦ୍ରର' ଦ୍ୱୀପ ।
ଉପରେ ଅସଂଖ୍ୟ ସବୁଜ ନକ୍ଷତ୍ରର
ସମ୍ମିଳନୀ ।।

ଝଡ଼ ବର୍ଷାର ପର୍ଦା ଆଡ଼ୁଆଳରେ,
କୃଷ୍ଣଚୂଡ଼ା ପତ୍ରରେ
ଅନେକ ବର୍ଷାର ଛିଟା ଲାଗିଛି ।
ଥରିଉଠୁଛି ଓଦା, ଅଭିମାନର ଗଛ ।
ଝଡ଼ ବତାସର ପ୍ରଚଂଡ ନିଃଶ୍ୱାସରେ
କଂପିଉଠୁଛି
ରଜନୀଗଂଧା ଗୁଚ୍ଛ ।।

॥ ଢେର ॥

ତରଂଗ ଆଉ ସ୍ୱନତା ପାଖାପାଖି ହୋଇ
ବସିଥିଲେ
ବାରଂଡାରେ ।
ବର୍ଷା ଛିଟା ଆସି ଲାଗୁଥିଲା
ଦୁହିଁଙ୍କ ଦେହରେ ।
ହାଓ୍ୱାର ଶୀତ ଫଗୁର
ବେଳେ ବେଳେ ଆସି ବିବ୍ରତ
କରି ଯାଉଥିଲା
ଦୁହିଁଙ୍କ ॥

ପ୍ରକୋଷ୍ଠରେ ମିଂଜ ମିଂଜ ହୋଇ ଜଳୁଥିଲା
କିରସିନ୍ ହାରିକେନ୍,
ଝଡ଼ରେ ନିଭିବ ନିଭିବ ହୋଇ,
ଇଚ୍ଛା କଲେ ଘର ଭିତରେ ଯାଇ
ସେମାନେ ଆଶ୍ରୟ ନେଇ ପାରଂତେ,
କିଂତୁ ଯାଉ ନାହାଂନ୍ତି ।
ବର୍ଷାର ମୂଲୟମ୍ ସ୍ପର୍ଶ
ପଶ୍ଚିମ ମୌସୁମୀର ନୂତନ ସ୍ୱାଧୀନତା
ସେମାନଂକ ନିକଟରେ ଆଜି
ନୂଆ ଅର୍ଥରେ ଭରା ॥

ବର୍ଷା ଛାଡ଼ିଯାଉଥିଲା ବେଳେ ବେଳେ ।
ସଁବାଳୁଆର ଜୀର୍ଣ୍ଣ ଖୋସା ଭିତରୁ
ଉଜ୍ଜ୍ୱଳ ପ୍ରଜାପତି ପରି
ମେଘର କୃଷ୍ଣ କୋଷରୁ ଲଂବ ଆସୁଥିଲା
ଜ୍ୱଳଂତ, ଚଂଦ୍ରର ତରବାରି ।
ପୁଣି ଲୁଚିଯାଉଥିଲା
କଳା ବଉଦର ଆଢୁଆଳରେ ॥

## ॥ ଚଉଦ ॥

ବର୍ଷା ଗୁଡ଼ଉଚି, ତରଂଗ କହିଲା ।
ଗୁଡ଼ଗଲାଣି ? ପରୀକ୍ଷା କରି ଦେଖିବା ପାଇଁ
ଉଭୟେ ବାହାରକୁ
ହାତ ବଢ଼ାଇଦେଲେ ଯୁଗପତ୍ ।
ଦୁଇଟି ସମାଂତରାଳ ହାତ
ଲଂବି ଆସିଲା ସାମନାକୁ,
ବନିତା ଚୁଡ଼ିରେ ଝୁଣ ଝୁଣ ଆୱାଜ ।
ଦୁଇଟିଯାକ ହାତର ପାପୁଲି ଅଜାଣତରେ
ସ୍ପର୍ଶ କଲା ପରସ୍ପରକୁ ।
ତା' ପରେ ବନିତା ବୋଧହୁଏ
ହାତ ଟାଣିଆଣିଲା !
ତା ଦେହରେ ଶୀତ୍କାର ॥

ଏକ ନୂଆ ରୋମାଂଚ
ଅନୁଭବ କଲା ତରଂଗ
ସର୍ବାଂଗରେ
ଅପରିଚ୍ଛନ୍ନ ହାରିକେନ୍ ଆଲୁଅରେ
ବନିତାର ଶୁଭ୍ର ହାତ
ତରଂଗ ଦେଖିପାରିଲା
ଦେଖିପାରିଲା ତାର ଶୁଭ୍ର ନଖର ଔଜ୍ଜ୍ୱଲ୍ୟ,
ତାର ମନେହେଲା ଏଇ ସଜଳ ଅଂଧକାରର
ସମୁଦ୍ର ଭିତରେ ।
ବନିତାର ଶୁଭ୍ର ହାତ
ଯେମିତି ଏକ ହଳଦିଆ ଦ୍ୱୀପ ॥

ଉପରେ ସପ୍ତର୍ଷିର ଶ୍ୟାମଳ ଅଂତରୀପ ।
ନାନା ବିଚିତ୍ର ନକ୍ଷତ୍ରର ସମାହାରରେ
ଆକାଶର ଗଂଡସ୍ଥଳ ମଂଡିତ ।"
ଏଇ ବନ୍ଧୁ ବିଚିତ୍ର, ନଧିଚିନ୍ତ

॥ ପଂଦର ॥

ଆକାଶ ତଳେ—
ଏଇ ଶ୍ୟାମଳ ଉପତ୍ୟକାର
ସିକ୍ତ ମାଟି ଉପରେ
ପୃଥିବୀର କୋଟି କୋଟି ନରନାରୀ
ମଧ୍ୟରେ
ବସିଥିଲେ ମାତ୍ର ଦୁଇ ଜଣ
ପରସ୍ପର ନିକଟରେ ।
ଏକ ବିଶେଷ ସ୍ଥାନ ଓ ସମୟର
ସଙ୍ଗ ଭିତରେ
ସମନ୍ୱିତ ହୋଇ ॥

ପରସ୍ପରର ନିଃଶ୍ୱାସ
ବାଜୁଥିଲା ପରସ୍ପରଠାରେ ।
ଜଣକ ସ୍କଂଧରେ ଅନ୍ୟର ବୋଧ
କ୍ରମେ ତୀକ୍ଷ୍ଣତର ହୋଇ ଉଠୁଥିଲା ।
ବନଫୁଲରେ କନକିତ
ଡାକବଂଗଳାର ନୀରବ ଚତ୍ୱର
ସେମାନଂକ ରୁଚି ଢଗରେ
କରିଥିଲା ରଚନା,
ଛାଇ ଆଉ ଆଲୁଅର ବୁଣା
ନୂଆ ପରିବେଶ ॥

ବନିତା କହିଲା,— ନୂଆ ବର୍ଷରେ
ଆମ ଘରେ ତମର ନିମଂତ୍ରଣ
ଯିବ ନିଶ୍ଚୟ ॥

ତରଂଗ କହିଲା— ବର୍ଷ ଶେଷର ଅତିଥି ତୁମେ ମୋର
ନୂଆବର୍ଷର ପ୍ରଥମ ଦିନଟିକୁ
ମୋଠାରୁ ତୁମେ କରି ନେବାକୁ ଚାହଁ ହରଣ ।
ନୁହେ ?

॥ ଷୋହଳ ॥

ସ୍ୱର ତାର ଅଭିମାନର ଲୁହେ
ଧୋଇଯିବ ଆଜ ଟିକେ ପରେ
ହୁଏ ତ ଅବା ଭଶ ॥

ବନଟା ହସିଲ୍ ।
ଟ୍ରକର ବସିରହିଲେ ଦୁହେଁ ।
ରଂଗ କହିଲା, ମୁଁ ସହରକୁ ଘୃଣା କରେ ।
ମୁଁ ଘୃଣା କରେ ସେଇ ଇଟା, ମାଟି, ଲୁହା ଆଉ
କଂକ୍ରିଟର ଧୂସର ଜଗତକୁ ।
ଗ୍ରାମର ଏଇ ନାଲି ମାଟିର ସଡ଼କ
ଏଇ ସରୁ ସରୁ ଗ୍ରାମ ବାଲ,
ଏଇ ପାହାଡ଼
ନଈ,
ବନ,
ଗେରୁଆ ରଂଗର ଶୀତ ସକାଳର
କୁହୁଡ଼, ଆଉ ସାୟାହ୍ନ
ଏଇ ହଉଚ ମୋର ନିଜର
ସ୍ୱକୀୟ ପରିପ୍ରେକ୍ଷୀ ।
ମୁଁ ଏଇ ପଲ୍ଲୀ ଆକାଶର ପଖୀ ।
ସହରର ସେଇ ଆଲକାତରା ଢଳା ପିଚ୍
ରାସ୍ତା ସାଂଗେ
ମୋ ପାଦର ଛଂଦ ଭାଂଗେ ॥

ବନଟା କହିଲା, ତା ମାନେ ?
ତମେ କଣ ସବୁଦିନେ ରହିବାକୁ ଚାହଁ
ଗାଁରେ ?
ଗାଁ ଛୁଟିର ସଂସାର ।
ଛୁଟିଟ୍, ଅଳସ ମଦରେ ମନେହୁଏ
ଏ ବନ୍ୟ ଏଇ ଗ୍ରାମର ଚେହେରା !

॥ ସତର ॥

ତାର ବଣ, ବିଲ, ନଦୀ, ଗଛ,
ସବୁ ମନେହୁଏ
ଏକ ସବୁଜ, ସ୍ୱଚ୍ଛ
ସ୍ୱପ୍ନର ତର୍ଜମା ॥

ତରଂଗ ବିନତାର ହାତ ଚିପି ଧରି କହିଲା—
ଠିକ୍ ଯେମିତି ତମେ ବିନତା
ସବୁ ପ୍ରକାର ଧାରଣା, କଳ୍ପନା, ଚିଂତା,
ସବୁ ଦୁଃଖ, ସୁଖ, ଅବସାଦ,
ସବୁ ସ୍ୱପ୍ନ ଓ ଖିଆଲର
ଅନୁବାଦ ॥

ଝଡ଼ ରାତିର ଗର୍ଜ୍ଜନ ।
ଝାଉଁ ବଣ
ଆଉ ଘାନୁମଣ୍ଡିର ନିର୍ଜନ
ତଟରେ,
ଗର୍ଜିଉଠେ ଅଂଧକାରର ସାପ ॥

ପ୍ରତିବାଦ ସ୍ୱରରେ ବିନତା କହିଲା—
ମୁଁ ହୋଇପାରେ ନା ଗ୍ରାମର ଉପମା,
କହିଚ ସବୁ ଗ୍ରାମ ଛୁଟିର ବିଳାସ,
ମୁଁ କିଂତୁ ସବୁ ଦିନର—
ଏତିକି କହି ସେ ଥମିଗଲା ।
ତା'ର ମନେ ହେଲା ସେ ଯେମିତି
ଅନେକଦୂର ଆଗେଇ ଯାଇଚି
ନିଜ ଅଜାଣତରେ ॥

ତରଂଗ କହିଲା—ତେବେ—ତେବେ—
ତମେ କ'ଣ ଗାଁକୁ
ଭଲ ପାଅ ନା ବିନତା ?

॥ ଅଠର ॥

ଜନତା ଅନାଇଲା ତାକୁ ତୋଳି ତାର ଶ୍ଳଥ ମଥା ।
ତା'ପରେ କହିଲା, ଭଲ ପାଏ
ଖୁବ ଭଲ ପାଏ ।
ଭ୍ରାମ୍ୟମାଣ ମୁସାଫିର ଯେମିତି
ଭଲପାଏ
ତା' ତମ୍ବୁର ଚତୁର୍ଦ୍ଦିଗ
ପରିମଣ୍ଡଳକୁ
କିନ୍ତୁ ସେ କଣ ବନ୍ଧା ହବାକୁ ଚାହେଁ
ସେଇଠି ?

ସହର ମୋର
ପ୍ରାତ୍ୟହିକ ଜୀବନର ଘର,
କର୍ମଚଞ୍ଚଳ ଦୈନନ୍ଦିନର
ଲୀଳାଭୂମି ।
ଗ୍ରାମ ମୋର ଛୁଟିର ତୀର୍ଥ ।
ଏଇ ମୋର ଚିନ୍ତା କୋଣ ॥

ତରଙ୍ଗ ମୁହଁ ହଠାତ୍ ଫିକା ପଡ଼ି ଆସିଲା ।
ସୂର୍ଯ୍ୟ କିରଣରେ ରଖିଲେ ଯେମିତି କ୍ରମେ
ଶେତା ପଡ଼ିଯାଏ ବୈଠକଖାନାର
ରଙ୍ଗୀନ୍ କାଗଜର ଫୁଲ ।
ସେ ହତାଶ ସ୍ୱରରେ କହିଲା—
ମୁଁ କିନ୍ତୁ ଜାଣି ନ ଥିଲି ଜନତା
ତୁମେ ଇସ୍ପାତ ସହରର
ଏତେ ଅନ୍ଧ ଉପାସିକା ବୋଲି ।
ମୋର ବିଶ୍ୱାସ ଥିଲା ତମେ
ପଲ୍ଲୀର କର୍ମ-ବିଭୋଳ,
ବର୍ଷା-ବିହ୍ୱଳ
ତନ୍ଦ୍ରା-ଅଳସ

## ॥ ଓ୍ଣେଇଣି ॥

ମାଳ ଉପତ୍ୟକାର
ମୁକ୍ତ ବିହଂଗୀ ହେବ ବୋଲି ।
କିଂତୁ ତୁମେ ଯେ ଲୁହା ପିଂଜରାର ବନ୍ଦିନୀ,
ଆକାଶର ହରତ୍ ନିମନ୍ତ୍ରଣ
ତମ ଡେଣାରେ
ଆଣେ ନାଇ କଂପନ
ପାଏନାଇ ମୋଟେ ସମର୍ଥନ ॥

ଅଂଧାରର ଆବର୍ତ୍ତ,
ରାତିର କଳା ଭଉଁରୀ
ଭିତରେ ପୁଣି ଭଉଁରୀ,
ମଂଥି ଦଉଥିଲ
ଧାନ ବିଲର ଚଉଁରୀ ॥ *

ଜନତା ବୁଝି ପାରିଲ
ତରଂଗ କଂଠ ସ୍ୱରରେ ଅଭିମାନ ।
ସେ ଅଳ୍ପ ହସି ଜବାବ ଦେଲ—
ତମେ ଯେମିତି ମତେ ଭୁଲ ନ ବୁଝ
ତରଂଗ,
ମୁଁ ତୁମକୁ କହୁଚି, ପୁଣି ବି  କହୁଚି,
କୌଣସି ଏକ ପଲ୍ଲୀ ଗାଁର
ନିଭୃତ  କୋଣର
ଅଚଳାୟତନ ଭିତରେ
ଦୁନିଆଠାରୁ ବିଚ୍ଛିନ୍ନ ହୋଇ ରହିବା କଥା
ମୁଁ ଧାରଣା କରିପାରେ ନାଇ ।
ଯେଉଁଠି ଦୈନିକ କାଗଜ ସ୍ୱପ୍ନ,
ଡାକଘର ଦସ୍ତାରୁ ସାପ୍ତାହିକୀ ବି ଯେଉଁଠି

* ଚଉଁରୀ—ଝିଂକା ।

## ॥ କୋଡ଼ଏ ॥

ଅର୍ଦ୍ଧମାସିକର ନିୟମାନୁବର୍ତ୍ତିତା ଧରାଇ ବସିଛ,
ଯେଉଁଠି ନାହିଁ ଟେଲିଫୋନ, ଟେଲିଗ୍ରାମ
କିଂବା କର୍ମତତ୍ପର ଜୀବନର ଭିଡ଼,
ସେ ଶଂଖ-ମାନ୍ତ
ଯେତେ ସୁଂଦର ହେଉ,
ଯେତେ ଆକର୍ଷଣୀୟ ହେଉ,
ମୋ ପ୍ରାଣର ବିକାଶ ପାଇଁ
ନୁହେଁ ତାହା ଶ୍ରେୟ ।
ଏକଥା ମୁଁ ବୁଝିଛି ।
ମୁଁ ସେଠି ପାଗଳ ହୋଇଯିବି
ତରଂଗ ।
ସେଇ ଏକଧା, ବୈଚିତ୍ର୍ୟହୀନ ଜୀବନର କ୍ଳାଂତିରେ ॥

ଏଇ ତମ ଗାଁ ମୁଂଡରେ ଯେଉଁ
ଟ୍ରେନ୍ ଲାଇନ୍ ବନ୍ଧା ଯାଇଛି
ଯାହା ଉପରେ ଶଂଜ, ଭଗ୍ନ
ସଶମ୍ଭୃତ ପଶ
ଭାସିଯାଏ ଅସଂଖ୍ୟ, ଅସଂଖ୍ୟ ମାଲଗାଡ଼ି
ଆଉ ଯାତ୍ରୀବାହୀ ଟ୍ରେନ୍,
ମୁଁ ଏଇ ଡାକବଂଗଳା ହତାରୁ
ଉଦାସ ଆଖିରେ ତାହା ଦେଖେ ।
ମନେହୁଏ କେତେ ନା କେତେ ଦୂରରେ ଷ୍ଟେସନ ?

ମତେ ଯେମିତି ବ୍ୟଂଗ କରି ସେମାନେ
ଚାଲିଯାଂତି ଦୂର ଦୂରାଂତରକୁ ।
ମନେହୁଏ ମୁଁ ଯେମିତି ଏକ ନିର୍ଜନ ଟାପୁର
ଜେଟିରୁ ଦେଖୁଛି
ଦୂରଦୂରାଂତରୁ ଭାସି ଯାଉଥିବା
ଜାହାଜର ମାସ୍ତୁଲ ।

## ॥ ଏକୋଇଶି ॥

ମୋ ଭିତରୁ ଯେମିତି କିଏ କହି ଉଠେ
ଛୁ କଂଘା, କଂଘା,
ଏ କଣ କମ୍ ଭୁଲ୍
ତରଂଗ ?

ପୁଣି ବର୍ଷା, ପୁଣି ଝଡ଼ ହେଲା ।
ସେଇ ନିସ୍ତବ୍ଧ, ମେଲା
ବାରଂଡାରେ ବନିତା ଓ ତରଂଗ ଦେଖିଲେ
ଦୂର ଶାଳବନ ଉପରେ ଘର୍ଦ୍ଦାଁର ଘର୍ଦ୍ଦାଁର
ଝଂଜା ବତାସ ଚଲିସି ଆସୁଚ ।
କ୍ରମେ ସାଗୁଆନ ଜଂଗଲ ପାର ହୋଇ
ଧାନ ବିଲ,
ପୁଣି ଧାନ ବିଲ ଟପି
ଶ୍ମନୁମଣ୍ଡର ନିସ୍ତବ୍ଧ ଚଦ୍ର ଉପରେ
ତା ଲଦଗୁଇ ହୋଇ ଗ୍ଲଲିଗଲା ॥

ଦୂରରେ ବାଉଁଶ ଗଛ ସବୁ କଡ଼ମଡ଼ କରି ଉଠିଲେ
ଗୋଟାଏ ତାଳ ବାହୁଂଗା ଝଡ଼ରେ
ଖସିପଡ଼ିଲା ତଳେ ।
ଅସମ୍ଭବ, ଅସ୍ବାଭାବିକ ବର୍ଷା ।
ବଜ୍ର, ବିଜୁଳି
ଅଳ୍ପ ଦୂରରେ ଶ୍ମଶାନର ପ୍ରଜ୍ଜ୍ୱଳିତ ଚୁଲି
ନିଭିଗଲା ।
ଅର୍ଦ୍ଧ ଦଗ୍ଧ ଶବ ପାଖରେ
ଶୃଗାଳର ମୁହୁର୍ମୁହୁ ବିକଟ ଚିତ୍କାର ॥

ମନେହେଲା ଏକ ନିଭୃତ ପାହାଡ଼ର
ବହୁ କାଳର ଦସ୍ୟୁ-ଗୁହା
ଯିମିତି ଫାଟି ଯାଉଚି
ବାରୁଦରେ ॥

॥ ବାଇଶି ॥

ସାଇଁ ସାଇଁ ପିଟୁଛି ପବନ—
ଗୁଇଁ ଗୁଇଁ ମାରେ ପାଣି-ଛିଟା,
ବିଜୁଳି··ବିଜୁଳି
ଘଡ଼ଘଡ଼ ପଡ଼େ
ଘଡ଼ ଘଡ଼ ।
ଘନଘନ
ବିଦ୍ୟୁତର
ତୀବ୍ର ପିଚକାରି ॥

କାଳୁଆ ବଣ ପକ୍ଷୀ
ଭଗ୍ନ ନୀଡ଼ୁ
ଉଡ଼ିଗଲି ଡାକି ।
ଭାଂଗିପଡ଼େ ଭାଂଗିପଡ଼େ
ତାଳ ବଣ
ଉଚ୍ଚ ମେହେଗିନି ।
ଶାଳୁମଞ୍ଜି ଉଠେ ଆହା କାଂନ୍ଦ
ନଈ ପଠା, ଚରାଭୂଇଁ
ଗାଇ ଉଠେ ପ୍ରଳୟର ନାଂଦୀ ॥

ବିନତା ଉଠି ଛିଡ଼ା ହେଲି
ତରଂଗ ବ ଟିଆହେଲି ।
ଦୁହେଁ ହାତ୍ସଂକ ତନ୍ନତନ୍ନ କରି
ପରୀକ୍ଷା କଲେ ।
ଉଭୟେ ନିରୁତ୍ତର ॥

ଏଇ ସମୟରେ ପାହାଡ଼ର
ନିଭୃତ ଗହ୍ୱରରୁ
ବନସ୍ଥଳୀ କଂପାଇ ଭାସି ଆସିଲି
ମହାବଳ ବାଘର ରଡ଼ି
ଯେମିତି ଘଡ଼ଘଡ଼

॥ ଚେଇଣି ॥

ଫାଟାଇ ଦଉଚ
ପାହାଡ଼ର ଛାତି ॥

ଖୋଲା ପ୍ରାଂତରରେ ଡାକଗଲା
ସେ ଗର୍ଜନ,
ବାଜ ଉଠିଲା ବଣ ଜଂଗଲର ଦାଢ଼େ ।
ଗିଲ ଆଉ ବେତ ଗଛ ଉହାଢ଼େ
କାଂଦ ଉଠିଲେ ବଣ ପଖୀ ।
କଲା ଘଡି ନାଚେ ଉତୁରଲ
ବନତାର ମନେ ପ୍ରାଣେ
ନୂଆ ଏକ ଭୟର ହିଂଦୋଳ ॥

ଯେ ଚମକ ପଡ଼ଲା ।
ତା'ପରେ ସେ ଲୁଗି ଆସିଲ
ତରଂଗ ଣକଟକୁ ।
ତରଂଗ ତାକୁ କଲ ଗ୍ରହଣ······
ତାର ଭୟାତୁର ନାଗଭିକୁ ଦେଲା ଶରଣ ॥

ବନତାର ଜଡ଼ତା ଭାଂଗିଚ ।
ବାଘର ଭୀଷଣ ହୁଂକାର
ଝଡ଼ ବର୍ଷାର ପ୍ରଳୟ ତୋଫାନ
ତା' ମନର ଗଭୀର ତଂଦ୍ରା ଭାଂଗି ଦେଇଚ ।
ତା' ସ୍ନାୟୁରେ ଭୟର ଭୁଷାର ଫଗୁର, ନୂଆ ଆଲୋଡ଼ନ ।
ତା' ମନରେ ଶଂକାର ଥଂଡା ଜୀବାଣୁ ।
ତା' ମନର ସବୁ ଜଡ଼ତା ଦୂର ହୋଇ
ଜାଗି ଉଠିଚ ଏକ ରେଶମି ପର ପିଚ୍ଛିଳ ଆତଂକ,
ଭୟ ।
କିଂତୁ ତା' ମନର ସେଇ ଗୋଟିଏ ତଂଣୀ ସାଂଗେ ସାଂଗେ
ଅନ୍ୟ ସବୁ ତଂଣୀ ବ ଜାଗି ଉଠିଚଂତ
ତଂଦ୍ରାର ଣର୍ଜୀବ ଶଯ୍ୟାରୁ ।

॥ ଚବଣି ॥

ବାଜ ଉଠିଛନ୍ତି ସେମାନେ ବ
ଏକ ନୂଆ ସ୍ୱରର ଝଂକାରରେ ॥

ଭସ୍ମ ଭସ୍ମ ଭସ୍ମ !
କିଂନ୍ତୁ ସେଇ ଭସ୍ମରେଇ ନଥ ସେମିତି ଜାଗିଚି,
ତା ରକ୍ତରେ ବରଫର ଥଣ୍ଡା ଉଚ୍ଛ୍ୱାସ,
ଲୋମକୂପରେ ତୁଷାରର ପ୍ରତିକ୍ରିୟା ॥

ପ୍ରଶ୍ୱାସ ତାର ତରଂଗର ବକ୍ଷ ବିଦ୍ଧ କଲା ।
ତରଂଗ ତାକୁ ଧରି ରଖିଲା
କିନ୍ତୁ ସମସ୍ତ, ପଡ଼ିଯିବାକୁ ନ ଦେଇ—
ସେଇ ଭସ୍ମରେ କିଂନ୍ତୁ ସେ ଜାଗି ଉଠୁଥିଲା ।
ବନଜା ଜାଗି ଉଠୁଥିଲା
ତା' ମନର ନିଦ୍ରା ଭାଂଗି ଯାଉଥିଲା
ଏକ ନୂଆ ଆଲୋଡ଼ନରେ ॥
ତା ଦେହର ଓ ମନର ସବୁ ତଂନ୍ତ୍ରୀ
ଜାଗି ଉଠୁଥିଲେ,
ତେଜି ଉଠୁଥିଲେ ।
ତା ରକ୍ତରେ ତୋଫାନିତ ହେଉଥିଲା
ଏକ ନୂତନ ଉତ୍ତେଜନା,
ତୁଷାର ଶୀତଳ ଭସ୍ମ ॥

ମହାବଳ ବାଘର ହୁଂକାର ।
ତରଂଗ ଓ ବନଜା ଆଖିରେ ଭାସି ଉଠିଲା
ଏକ ପୀତ ମାର୍ବେଲ ରଂଗର ବାଘ,
ଚମଡ଼ାରେ ତାର ଖରି ଧନୁକର ଦାଗ ।
ଆଖିରେ ତାର ଚର୍ବି ପରି ସ୍ନିଗ୍ଧ କାଦ
ତରଳି ଆସୁଥିଲା ଏକ
ବନ୍ୟ ହିଂସାର ଉତ୍ତାପରେ !
ପ୍ରତି ଲୋମରେ ତାର କ୍ରୋଧ ।

॥ ପଚିଶି ॥

ସେ ଯେମିତ ଲାଂଜ ପିଟୁଥିଲା,
ନଖ ଘସୁଥିଲା
ପିଚ୍ଛ କରୁଥିଲା
ତା ପରେ ଲଂଫ ଦେଇ ଗର୍ଜନ ଛାଡ଼ୁଥିଲା
ପାହାଡ଼ ଗୁହାରେ ॥

ବନଚା ମୁହଁ ଗୁଂଜିଲା
ଚରଂଗ ବକ୍ଷରେ ।
ସେ ଜାଗି ଉଠୁଥିଲା ।
ଏକ ନୂଆ ଆବର୍ତ୍ତନ ଭିତରେ
ଧୀରେ ଧୀରେ ॥

ବାହାରେ ଝଡ଼ର ଅସଂଭବ ଜୋର ।
ସାମନ ରାସ୍ତାଦେଇ ଛୁଟି ପଳାଇଲା
ଏକ ଭକ୍ସାର୍ଟ ଠେକୁଆ ।
ପଛରେ ତାର ସୁ-ସୁ ଶବ୍ଦ କରି
ଗୋଡ଼ାଇଥିଲା
ଅଣନ୍ତଣର ସୁଅ ॥

ବନଚା ପଚାରିଲା—ସେ କିଏ ?
ଚରଂଗ କହିଲା—ସାପ, ସାପ, ସାପ ॥

ଚକମକ ବିଜୁଳିରେ ଦେଖାଗଲା
ଡାକବଂଗଳାର ପୂର୍ବପଟ
କଂଟା ବାଡ଼ ଭିତରେ
ସେମାନେ କୁଆଡ଼େ ଅଦୃଶ୍ୟ
ହୋଇଗଲେ
ନିମିଷକେ ।
ଆଗରେ ପାହାଡ଼ ।

॥ ଛବଣି ॥

ଛୁଟି ଚାଲିଛି ଧୂର୍ତ୍ତ ଠେକୁଆ
ତା ପଛେ ପଛେ
ଶିକାର ଲୋଭୀ ମଣିଚୂଡ଼ ॥

ବନତା ଭୟରେ ଚିତ୍କାର କରି ଉଠିଲା ।
ତା ପରେ ସେ ନିଜର
ସବୁ ଭାର ଢାଳିଦେଲା ତରଂଗ ଉପରେ ॥

ତରଂଗ ତାକୁ ନେଇ ଘର ଭିତରେ
ଶୁଆଇ ଦେଲା—
ବନତାର ଅର୍ଦ୍ଧଚେତନ ମନରେ
ନୂତନ ଦେଶର ଭୟ ।
ସେ କିନ୍ତୁ ଜାଗି ଉଠୁଥିଲା
ସେଇ ଭୟରେ,
ତୁଷାର ଶୀତଳ ଆବର୍ତ୍ତନରେ ॥

ତରଂଗ ଦେଖିଲା ହାରିକେନ୍‌ର
ମଇଳା ଆଲୁଅରେ
ବନତା କପାଳରେ ଏତେ ଥଣ୍ଡା ହାଓ୍ୱାରେ ବି
ବିଂଦୁ ବିଂଦୁ ଝାଳ ଜମି ଉଠୁଛି ।
ସେ ରୁମାଲରେ ତାହା ପୋଛିଦେଲା,
ତା ପରେ ପଂଖା କରିବାକୁ ଲାଗିଲା
ଏକ ପୁରୁଣା ଖବରକାଗଜର
ବିଂଚଣାରେ ॥

ତରଂଗ ଡାକିଲା ବନତା !
ବନତାଠୁ ଜବାବ ନାହିଁ ।
ତରଂଗ ବନତା ନାକ ପର୍ଯ୍ୟଂତ
ମୁହଁ ନେଇ ଆଘ୍ରାଣ କଲା ତାକୁ ।
ହଲାଇଦେଲା ତାକୁ ଜୋରରେ ॥

॥ ସଚେତଣି ॥

ବନତାର ଦେହ ଜାଗି ଉଠିଲା ।
ଜାଗି ଉଠିଥିଲା ତାର ସୁପ୍ତ ସ୍ନାୟୁ ।
ତା ଉଷ୍ଣ-ଚଂଚଳ ରକ୍ତ ସ୍ରୋତରେ
ଏ'କ ଉତ୍ତେଜନା !!
ତା ରକ୍ତର ନାଦ ଭାଂଗିଚ—
ହଉ ପନ୍ତେ ତା ଉଷ୍ମରେ ॥

ତରଂଗ ସ୍ପର୍ଶକଲା ତାକୁ ।
ବନତା ବହରେ ଶୀତ୍କାର ।
ତରଂଗ ବୁଝିପାରଲା ।
ତା ମୁହଁ ପର୍ଯ୍ୟଂତ ମୁହଁ ନେଇ
ଅର୍ଧଚେତନ କଂଠରେ ଡାକଲା—
ବନତା !!

ବନତା ଜବାବ ଦେଲା ।
ଅନୁଭବ କଲା ତରଂଗର ସ୍ପର୍ଶ ।
ହାଶ୍ବକେନ୍‌ଷ୍ଟାକୁ ଥରାଇ ଦେଇଗଲା
ଝାପ୍‌ସା ପବନ ।
ଘର ଭିତରେ ଅଜାଡ଼ ହୋଇ ପଡ଼ଲା
ହିଂସ୍ର ବ୍ୟାଘ୍ରର ଗର୍ଜନ ॥

ତାର ମନେ ହେଲା ସେ ଯେମିତି ପ୍ରଦୀପ,
ଆଉ ତରଂଗ ଝଡ଼ ।
ତରଂଗର ସ୍ପର୍ଶରେ ସେ ଜଳି ଉଠୁଚ,
ତେଜ ଉଠୁଚ, ଆଉ ପୁଣି ଯେମିତି
ଲିଭି ଯାଉଚ ।
ତା ବହରେ ଖାଲି ହାଓ୍ବସ୍ !!

ଅସଂଭବ୍ଯ ପବନର ଜୋର
ତରଂଗର ପ୍ରଶ୍ୱାସରେ ଅସହ୍ୟ ଉତ୍ତାପ ।

॥ ଅଠେଇଶି ॥

ବନିତାର ଶୀତଳ ବକ୍ଷ କ୍ରମେ ।
ଗରମ ହୋଇ ଉଠୁଥିଲା ।
ତା ମନର ଜଡ଼ତା ଭାଂଗିଚି
ତା ଦେହ ଜାଗି ଉଠିଚି ।
ରକ୍ତରେ ତାର ତରଂଗର
ଉତ୍ତାପ !!

ଦେହ·········ଦେହ········· ।
ତରଂଗ ଅନୁଭବ କଲା
ବନିତାର ଦେହ ।
ସେ ଆଘ୍ରାଣ କଲା ତାର କେଶ ।
ସେ ସ୍ପର୍ଶ କଲା ନିଜ ଆଂଗୁଠିରେ
ବନିତାର ଆଂଗୁଠି ।
ସେ ନିଜ ହାତରେ ଅନୁଭବ କଲା,
ବନିତାର ହାତ,
ବାହୁ, ଗ୍ରୀବା, ନଖ ।
ଜଳି ଉଠିଚି,
ଜଳି ଉଠିଚି
ବନିତାର ଦେହ-ଶିଖା ।
ଦୂରରୁ ଦେଖାଗଲା ଏକ ହାରିକେନ୍ ଲଂଠନ
ଗାଁ ମୁଂଡରେ ॥

ସାଇଁ ସାଇଁ କଳା ରାତ୍ର ।
ଟିକ୍ ଟିକ୍ ମାରୁଚି ବିଜୁଳି ।
ସୁପ୍ତ ପଥ ସିକ୍ତ ଧୂଳି,
ନୀରବ ଜନପଦ ॥

କ୍ରମ-ସ୍ଫୀତ ଅଂଧକାରରୁ ହୃଦ
ଉଠୁଚି ଫୁଲି ॥

॥ ଅଣଚାଳିଶି ॥

ପୁଣି ବିଜୁଳି……

ବନଚାର ଦେହ……
ଅଂଧକାର,
ମାଂସ ଆଉ କେଶର ଗଂଧ ।
ନୂଆ ବର୍ଷାର ଛଂଦ ॥

ହାଡକେନ୍ଥା ଭାଟେଇ ଆସିଲା ॥

ଚଂରଗ ନାଳକୁ ଯାଇଚି
ଭୁଲି ।
ବନଚା ବ ।
ବିଜୁଳି…ବିଜୁଳି…
ବିଦ୍ୟୁତର ପିଚ୍‌କାରୀ ।
ଚାଲ ବଣର ମେଟ୍ଟେରବ
ଉଠୁଚି ଅଣ ॥

ବହୁ ଦୂରରୁ ପୁଣି ଆସିଲା ପହଁର
ଅର୍ଦ୍ଧନ ଝଡ଼ର ହସ ॥

ବନଚା ଡାକଲା ତରଂଗ, ତରଂଗ
କ ଥଂଡା ଚମ ନିଃଶ୍ୱାସ ॥

କଳା ବାଘର ହୃଦ
ଫୁଲ ଉଠୁଚି ।
ଅଂଧାର…ଅଂଧାର ।
ବନଚାର ଦେହ-ଶିଖା
ଜଳି ଉଠିଚି ॥

ଅଂଧାରର ଘନ କୁଂଡଳୀ ଭିତରେ
ପୁଣି କୁଂଡଳୀ,
ବୃତ୍ତ ଭିତରେ ପୁଣି
ଅଂତର୍ବୃତ୍ତ ।

## ॥ ଝରଣି ॥

ଅଂଧାର ବନ୍ଦରେ ଅଂଧାରର
ସଂଘର୍ଷ, କ୍ଷୁବ୍ଧ…ଉତ୍ତପ୍ତ… ।
ଜଳ ଉଠୁଚି
ଜଳ ଉଠୁଚି !
ଘୋଡ଼ା ମଦମତ୍ତ ପରି ॥

ହାରିକେନ୍‌ଟା ଆସି ବଂଗଳା ହତା
ଫାଟକ ସାମନାରେ
ଛିଡ଼ା ହେଲା ।
ଜନତା ଓ ତରଂଗ କହିଲେ—
ମା' ଫେରିଲେଣି ॥

ବାହାରେ ନଷ୍ଟଚଂଦ୍ରର ଛଂଦ ।
ଝଡ଼ ଥମି ଯାଇଚି ।
ଶେଷ ବସନ୍ତର ମଂତ୍ର
ଉଚ୍ଚାରଣ କରି ଭାସି ଆସୁଚି
ଶାଳ ଅରଣ୍ୟର ମର୍ମର ॥

ମେଘ ଫାଟି ଜହ୍ନ ଉଠିଚି ।
ତରଂଗ କହିଲା—
ଏଇ ବୋଧହୁଏ ଫରାସୀ ସୁରରିୟାଲିଜମ୍‌ର
ସବୁଜ ଚଂଦ୍ରର ଦ୍ୱୀପ !!

---

# କେତକୀର ଚିଠି

ବନତା ଅପା ଜାଣିବ ।
ଆମେ ସମସ୍ତେ ଭଲ ଅଛୁଁ ।
ତୁମ କୁଶଳକୁ ଶ୍ରୀ ପରମେଶ୍ୱର ଅଛଂନ୍ତି ॥

ଚନ୍ଦୁ ଭାଇ କାଲି କଟକରୁ
ଆସି ପହଂଚିଲେ ।
ସେ କହୁଥିଲେ ତମେ କୁଆଡ଼େ କଲିକତାରେ
ତମ ମାମୁଂକ ପାଖେ ରହୁଚ,
ଆଉ କଣ ଅର୍ଥନୀତି ନା କୋଉଥିରେ
ଏମ୍. ଏ. ପଢ଼ୁଚ ।
ଚନ୍ଦୁ ଭାଇ ଆଉ ପଢ଼ିବେ ନାଇ ।
ସେ ଗାଁରେ ଏକ କୃଷି-ଫାରମ୍ କରିବେ ।
କୁକୁଡ଼ା ଚାଷ, ମହୁ ଚାଷ
ଏଂଡିପୋକ ଚାଷ
ଏମିତି କେତେ ରକମର ଚାଷ କଥା ସେ
କହୁଥିଲେ ।
ମୁଁ ଏ ଚିଠି ମାଉସୀଂକ ଜରିଆରେ
ତମ ଆଗ କଟକ ଠିକଣାରେ ପଠାଉଚି ।
ଆଶାକରେ ପାଇବ ॥

ବନତା ଅପା ! ତମେ ଗତବର୍ଷ
ଆମ ସ୍କୁଲରେ ଯେଉଁ କଖାରୁ ଗଛ ସବୁ
ମାଡ଼ିବାର ଦେଖି ଯାଇଥିଲ,

॥ ବଢଣି ॥

ସେଥିରେ ସବୁ ବଡ଼ ବଡ଼ ବୋଇତକଖାରୁ
ଫଳିଚ ।
ଆମ ମଝି ଅଗଣାରେ ଯେଉଁ ସବୁ
ଜହ୍ନି ମଂଦା ଦେଖିଥିଲ,
ସେଥିରେ କେଡ଼େ ସୁଂଦର ଫୁଲ ଫୁଟିଚ !
ରାଣୀ ଫୁଲ ଚର ହଳଦିଆ
ଜହ୍ନ ଆଲୁଅରେ ଜରିର ପୋଷାକ ପିଂଧି
ସେମାନେ କେଡ଼େ ସୁଂଦର
ଦୋଳ ଖେଳୁଛଂତି ॥

ନାଗଅଇରି ଆଜ ବାରମାସି ବଣରେ
ଗୁଂଡୁଚି ମୂଷା ସବୁ ଖେଳୁଥାଂତି ।
ସେମାନେ ଗୁଳ ଉପରକୁ ଚଢ଼ିଯାଇ
ଜହ୍ନିଫୁଲ ଗହଳରେ
ଲୁଚକାଳି ଖେଳଂତି ॥

ତମେ ଗତ ଚିଠିରେ ଲେଖିଥିଲ
ତମ କଟକ ଘରେ ଫ୍ରୋନ୍‌ଟେନ୍ ଗଛରେ
ନୂଆ ପତ୍ର ଧରିଲାଣି,
ଆଉ ସେ ଯେଉଁ ରେଡ୍ଡୋଡେନ୍‌ଡ୍ରେନ୍ ନା କ'ଣ
ତାର ଯେଉଁ ଡାଳଟା ଶୁଖି ଯାଇଥିଲା ବୋଲି
ଲେଖିଥିଲ,
ତା ପୁଣି କଅଁଳିଲାଣି ନା ?
ତମ ମାଳୀ ବୋଧେ ଭଲକରି ପାଣି ଦଉନାଇ ।
ହେଉଚହେଲେ ଚଇସାଖିଆ ଗୁକର ନା
ଆଉ କଣ ?

ମୁଁ କଂଭୁ ସେଜ ଉପରଉଲ ଗରା ଗରା କରି
ପାଣି ଆଣି
ଆମ ବାଡ଼ପଟ ନଳକ ଧାଡ଼ିରୁ
ଗଛ ମଂଦାରେ ଢାଳେ ।

॥ ଚେତଣି ॥

ବୋଉ ବ ବେଳେ ବେଳେ ପାଣି ଢଏ ।
ତରଂଗ ଭାଇ ଏଠି ଥିଲେ ସେ ତ
ଢନ ସାବ୍ର ଖାଲ ସେଇ
ଗଛ ପତ୍ର
ପଛରେ ଲଗିଥିବ ॥

ଆଚ୍ଛା ବନତା ଅପା ! ସତ କହିବ ।
ତମକୁ ମୋ ରାଣ ।
ମୋ ମୁଂଣ୍ଡ ଖାଅ ।
ତମେ ତ ବଡ଼ଘର ଝିଅ ।
ସହରରେ ବଢ଼ିଚ
ପକା, କୋଠା ଭିତରେ ମଣିଷ ହୋଇଚ,
ତମକୁ ଗତ ସାଲେ କ'ଣ
ଆମର ଏଇ ଗୋଡ଼ ମାଟିର
କୁଡ଼ିଆ ଘର ସତରେ ଭଲ ଲଗିଥିଲା ?

ତମେ କଟକ ଫେରିଯାଇ ଆମ ଗାଁର
ଆଉ ଆମ ଘରର କେତେ ପ୍ରଶଂସା କରି
ଭାନୁମତୀ ଚତ୍ୱରର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି
କେତେ ଫର୍ଦ୍ଦ ଚିଠି ଲେଖି ନ ଥିଲ ।
କିନ୍ତୁ ସତରେ କଣ ତମେ ଆମକୁ ଆଉ
ଆମ ଗାଁକୁ ଭଲପାଅ ?

ମୁଁ ଦେଖିଚି ଆମ ଅଗଣାରେ
ସେଇ ବଡ଼ ବଡ଼ କାନ୍ସିରି, ଗୁଗୁ ରୁଖାଟିଆ
ଆଉ ଈଶ୍ୱରଜଟା ଗହଳରେ
ସଂତସଂତିଆ ମାଟି ଉପରେ ଗୁଲଲ୍ବେଳେ
ତମ ଧିଅଠା କମିତି ଶୀତେଇ ଉଠୁଥିଲା,
ଆଉ ସେଇ ସାଧବବୋହୂ, ଆଉ ଡେଲୁଗୁଣି
ପୋକକୁ ଦେଖି
ତମେ କମିତି ଚମକ

॥ ଚଉତରଣି ॥

ପିଂଡା ଉପରକୁ ଉଠିଗଲ !
ତୁମେ ଯେ ଭିନ୍ନଦେଶୀ ଲୋକ
ଏ କଥା ତୁମେ ନ କହିଲେ କ'ଣ ହେବ,
ତମ ଚାଲିଚଳନ ଢଂଗଢାଂଚାରୁ ବେଶ୍ ଫୁଟି
ଉଠିଥିଲା ।
ତମର ମନେ ଅଛି ଆମ ପିଂଡାରେ
ବସିଥିଲାବେଳେ
କଂକଡ଼ାବିଛା ନାଁ ଶୁଣି ତମେ
କେମିତି ପିଲାଂକ ପରି
ଚରଚରେଇ ଉଠିଲ ।
ତରଂଗ ଭାଇ ମତେ ଗାଳିଦେଲେ
ତମକୁ ଡରାଉଥିବାରୁ ।
ସତେ ବନତା ଅପା,
ତମକୁ ଦେଖି ମନେହେଲା ।
ତମେ ଯିମିତି କେଉଁ ଦୂର ଦୂରାଂତରର
ମଣିଷ ।
ହଠାତ୍ ଚାଲି ଆସିଥିଲ
ଆମର ଏଇ ଅଝାଲ ଝାଡ଼
ଅଖୋଜ ରାଇଜକୁ
ସାତ ସମୁଦ୍ର ତେର ନଈ ପାରହୋଇ
କେଉଁ ପ୍ରବାଳଦ୍ୱୀପର
ରାଜକନ୍ୟା ପରି ॥

ଆମର ସେଇ ବାଡ଼ପଟ ଭଂଗା ପାଚେରି,
ଆଉ ଶିଉଳିଲଗା କୂଅମୂଳ ;
ଚଉରାଥଳ,
ଦେଖି ତମେ କେମିତି
ଅସ୍ୱସ୍ଥ ବୋଧ କରୁଥିଲ
ତମେ ମୁହଁରେ କିଛି ନ କହ ପଛକେ

॥ ପଇଁତିରିଶି ॥

ମୁଁ କିଂତୁ ତମ ମନ ଭିତରର କଥା
ବେଶ୍ ଧରି ପାରିଥିଲି ।
ଆମ ଶୋଇବା ଖଂଜାରେ କାଳୀଗାଈର
ଗୋବର ଦେଖି ତମେ ସ୍ୱାସ୍ଥ୍ୟରକ୍ଷାର
ଯେଉଁ ସବୁ ତତ୍ତ୍ୱ ବୁଝାଇଥିଲ
ତା ମୋର ବେଶ୍ ମନେ ଅଛି ।
ଆମେ ଯେ ଗରିବ,
ଏ କଥା ତ ତମେ ଆଗରୁ ଜାଣିଥିଲ ।
ତରଂଗ ଭାଇ କହୁଥିଲେ ଆମ ଘର,
ଆମ ଅବସ୍ଥା ସବୁ ତମକୁ ସେ
ଟିକିନିଖି କରି ଜଣାଇଥିଲେ ।
ସବୁ ଜାଣି ଶୁଣି ତ ଫେରି
ତମେ ଆମ ଗରିବ କୁଡ଼ିଆକୁ
ଆସିଥିଲ ।
କାହିଁକି ଆସିଥିଲ,
କାହିଁକି ଆସିଥିଲ ତମେ ?
ତମେ କଣ ଆମ ଜଗତକୁ
ସହ୍ୟ କରି ପାରିଥାଂତ
ବନିତା ଅପା ?

ତମେ ଲେଖିଥିଲ—
"ଭାନୁମତୀ ଦେଶର ସେଇ ରକ୍ତ-କରବୀ
ଆଜି ସୁଦ୍ଧା ମୁଁ ମୋର କବିତା ଖାତା
ଭିତରେ ସାଇତି ରଖିଛି ।
ଆଉ ଅସ୍ତ ସୂର୍ଯ୍ୟର ଉପତ୍ୟକାର ସେଇ
ଶୁଷ୍କ କୃଷ୍ଣଚୂଡ଼ା
ଏବେ ବି ଜୁଡ଼ାରେ ଖୋସି ମୁଁ ଆନଂଦ ପାଏ ।"...
ବନିତା ଅପା ! ଇଏ ସିନା ତମ
ମନର କବିତା,
କିଂତୁ ହୃଦୟର କଥା ନୁହେଁ ॥

## ॥ ଛଡଣି ॥

ତମେ କହୁଥିଲ, ଆମ ଗାଁରେ
ବେଶିଦିନ ରହିଲେ ତମେ ପାଗଳ ହୋଇଯିବ ।
କାରଣ ବାହାର ଜଗତ ସାଂଗେ
ଯାର କୁଆଡ଼େ କୌଣସି ଯୋଗ ନାଇ,
ଦଶଆପାଖିଆ ନିର୍ଜନ ଟାପୁର ଅଧିବାସୀ ପରି
ମଣିଷର ମନ ଏଠି ହୋଇଯିବ ଖଂଜ, ଅଚଳ ।
କିଂତୁ ଛୁଟିରେ ଇଏତ୍ସ ଖୁବ ସୁଂଦର ।
ତୁଷାର ତୀର୍ଥ କାଶ୍ମୀରର କୌଣସି
ଗିରି ଅଂଚଳ ପରି ମନୋରମ,
ବିଚିତ୍ର ।
ମୁଁ କିଂତୁ କହେ, ଏଠି ରହିବାକୁ ଇଚ୍ଛା କଲେ
ତମେ ରହି ପାରଂତ,
ଆମେ ସବୁ ପୁଣି କେମିତି ଅଛୁଁ ?
ହୋଇପାରେ ଆମର ଅନ୍ୟ ଜଗତ ସାଂଗେ
ପରିଚୟ ନାଇ,
ସେଥିପାଇଁ ନିଜର ଶ୍ରେଷ୍ଠ ପରିସର ଭିତରେ
ଆମେ ସହଜରେ ଶାଂନ୍ତି ପାଇଚୁଁ ।
କିଂତୁ ତମର ସୁଦୂରପ୍ରସାରୀ ମନ
ଏଇ ଶ୍ରେଷ୍ଠ ପ୍ରାଂତରର ପରିଧି ଭିତରେ
ନିଜକୁ ହୁଏ ତ
ସୀମାବଦ୍ଧ କରି ପାରଂତା ନାଇ ।
ତା ବି ମୁଁ ବୁଝୁଁଚି ॥

ଛାଡ଼ ଏସବୁ ବାଜେ କଥା ।
ତମକୁ ଉପଦେଶ ଦେବାକୁ ମୁଁ ଗୁର୍ଜନ
ନୁହଁ ॥

ମୁଁ ତ ତମ ପରି ତିନି ପାଶ୍ କରି ନାଇ ।
ମୁଁ ପିଂଜରର ପକ୍ଷୀ,
ଆମ ଗାଁ ଅପର ପ୍ରାଇମେରୀ

## ॥ ସଲିଁତରଣି ॥

ସ୍କୁଲରେ ମୁଁ ପଢ଼ିଥିଲି ।
ତମକୁ ତ ଏଠି ଦେଖାଇଥିଲି
ବସ୍ତାନି ଖୋଲି
ମୋ ସାହିତ୍ୟସୋପାନ ବହି,
ଶ୍ରୁତିଲିଖନ ଆଉ ରଚନା ଖାତା ।
ଓଡ଼ିଆ ମାସିକ ପତ୍ର ଓ ଗଳ୍ପ କବିତା ପଢ଼ି
ଯାହା କିଛି ଓଡ଼ିଆ ଭାଷା ଶିଖିଛ ।
ତମର ଅଗାଧ ପାଠ ଦେଖି ମୋର ହିଂସା ହୁଏ ।
ଭାବେ, ମୁଁ ହେଲେ ତମ ପରି
ହେଇ ପାରନ୍ତି ।
ପାଠ ପଢ଼ନ୍ତି,
ଚାକିରି କରି ନିଜ ଗୋଡ଼ରେ ନିଜେ ଠିଆହୁଅନ୍ତି ।
ଏତେ ଦାନ୍ତନିକଟା ଆଉ ସ୍ୱାମୀଙ୍କର
ହବାକୁ ପଡ଼ନ୍ତା ନାହିଁ ପରା !!

କାଲି ସ୍ୱାମୀଙ୍କ ଚିଠି ଆଇଲା ଯେ
ସ୍ୱାମୀଙ୍କ ଚାକିରି ଚାଲିଗଲାଣି ।
ଭାରି ମନ ଖରାପ କରି ଲେଖିଥିଲେ ।
ସେମିତି ନଣନ୍ଦଙ୍କୁ ଖଣ୍ଡେ ନୂଆଲୁଗା ବି
ପଠେଇ ପାରିଲେ ନାହିଁ ।
ମତେ ତ ଶାଶୁଘରର ଯିବାକୁ ଡର ମାଡୁଛି ।
ମାଣବସାକୁ ନେବେ ବୋଲି କହିପଠାଇଥିଲେ ।
ସବୁ ରୋଜଗାରିଆ ଭାଇଙ୍କ ଭିତରେ
ଆମେଇ ଏକା ବେରୋଜଗାରିଆ ।
ସେଥିପାଇଁ ଶାଶୁ ଓ ଯା'ମାନଙ୍କ ଗଞ୍ଜଣାରେ
ଅନ୍ତ ନାହିଁ ।
କାନ୍ଥ ବାଡ଼କୁ ଦେଖେଇ ବାର କଥା
ଝାଡ଼ୁଥିବେ ।
ଘରଯାକର ସବୁ ପାଇଟି ମୋରିଠେଇଁ
ଲଦା ।

॥ ଅଠଚଳିଶି ॥

ଏଥିରେ ପୁଣି ଗୃକର ଗଲାଣି ।
ପଚାଶି ଟଂକିଆ ଫରେଷ୍ଟ କରାଣୀ ଥିଲେ ।
ସ୍ବାଂକ ମନର ଅବସ୍ଥା ବ
ଆଉ ଆଗ ପରି ନାଇ ।
ଟିକଏ କଥାରେ ଚଡ଼ ଯାଉଚଂତି ।
ମାରବାକୁ ମିଶୁଚଂତି ।
ଦ’ଥର ତ ହାତ ଉଠେଇ
ମାଡ଼ ଦେଇଲଣି
ମା’-କୁହାରେ ପଡ଼ ॥

ଆଜ ରେମି ପାଇଁ ଦ’ପହରେ ବସି
କଂଥା ସିଲେଇ କରୁଥିଲ ।
ତା କଂଥା ଦ ଖଂଡ ଗୁହ-ମୂତରେ ସଢ଼ି
ପଚଗଲାଣି ।
ଏତକବେଳେ ବଉଳ ଆସି ଡାକଲା
ତା ବର ଆସିଚ ଯେ ଦେଖିଯିବାକୁ ;
ଯାଇକର ଦେଖି ଆସିଲ ।
ହେଲେ, ମନ ମାନଲା ନାଇ ।
ମୋ ବଉଳ ନାଗି ନୁହ ।
ଦୋଘେଇ ।
ଟଂକା ଲୋଭରେ
ବଉଳକୁ ଠେଲ ଦେଇଚଂତି ।
ହେଲେ କଏ କହବ ?

ବିନତା ଅପା, ମୋ ଚିଠି ପଢ଼ି
ରଗିବ ନାଇ
ମୋ ହାତ ଅକ୍ଷରଗୁଡ଼ାକ
ଖୁବ ବଡ଼ ବଡ଼—ନା ?
ତମେ ଆମ ଘର କଥା

॥ ଅନ୍ତର୍ଗୁଞ୍ଜଣି ॥

ଆଜି ଆମ ଗାଁ କଥା ପଚାରୁଛ ।
କଣ ଲେଖିବି ?
ତମ ପରି ଲେଖିକାର ରୂପ ଫୁଟାଇବା
କ୍ଷମତା ତ ମୋର ନାହିଁ
ମୁଁ କଣ ଲେଖିବି କି ?
ଆମ ବାହାର ଖଂଜାରେ
ସେଇ ନାଲି କନିଅର
ଆଜି ମଧୁମାଳତୀ ଗଛରେ
ଫୁଲ ଫୁଟିଛି ।
ଗଂଗଶିଉଳିରେ ବି ଫୁଲ୍ ନେଂଥି ନେଂଥି
ହଉଛି ।
ପାଳଧୂଆଗଛ କଢ଼େଇଲାଣି ।
ଆଂବଗଛରେ ଗୋଟାଏ ବଡ଼
ମହୁଫେଣା ହୋଇଛି ।
ଖାଲି ମହୁମାଛିଂକ ଭିଡ଼ ।
ଡଂରଗ ଭାଇ କହୁଛଂତି, ନାଇ ଆଜି
ଭାଂଗିବା ନାଇ ।
ବଢ଼ୁ କେ ଯାଏ ବଢ଼ୁଛି ॥

ଶୁଣିଛ ବନତା ଅପା,
ଆମ ଶଂଖି ବଳେଇ ଛୁଆ ଦେଇଛି ।
କିଂନ୍ତୁ ଦିନ ଦି'ଟାରେ ଟାଉ କିନା
ଦି'ଟା ଛୁଆ ଗିଳି ଦେଲାଣି ॥

ଗୋବଣ୍ଣ ଗାଇଟି ଫଳ ଦେଇଛି,
କସରା ବାଛୁରୀଟିଏ ॥
ଡଂରଗ ଭାଇଂକ କଥା ପଚାରିଛ
ସେ ତ କାଲି କଟକରୁ ଆସିଲେ ।
କହୁଥିଲେ ଗାଁରେ-ଇ ରହିବେ ।
ଚାକିରି କରିବେ ନାହିଁ

## ॥ ଗ୍ଳାନି ॥

ଜମିବାଡ଼, ଯାହା କିଛି ଅଛି ତାଙ୍କୁ ହାତରେ
ଅମଳ କରି
ପୁଣି କଣ ସବୁ ଫଳ ଆଉ ପନିପରିବା
ବଗିଚ୍ଚ କରି
ସେ ବ୍ୟବସାୟ କରିବେ ବୋଲି କହୁଥିଲେ ।
ପୁଣି କହୁଥିଲେ
ମାଷ୍ଟର ଆଉ କିରାଣି ହୋଇ
ମାସକୁ ପଚିଶ ଷାଠିଏ ଟଂକା
କମେଇବାଠୁ ସେୟ ଢେର ଭଲ ।
ତା'ଛଡ଼ା ପରର ଗୋଲାମୀ କରିବା
ତାଂକ ଜାତକରେ ନାହିଁ ॥

ତାଂକ ମନ କେଜାଣି କାହିଁକି ଆଦୌ ଭଲ ନାହିଁ ।
ସବୁବେଳେ ଅନ୍ୟମନସ୍କ ଜଣା ପଡ଼ୁଛନ୍ତି ।
ତମେ ଯେଉଁ ସଦାବହାର ଆଉ ରଂଗମାଣିକ-
ଗଛ ଆମ ଅଗଣାରେ ରୋଇ ଦେଇ ଯାଇଥିଲ,
ସେଗୁଡ଼ିକ ଖୁବ ଭଲ ଉଠୁଛି ।
କେତେ ବାହାରିଲାଣି ।
ଫୁଲ ବି ଫୁଟିଛି ।
ଆଜି ସଖୀଙ୍କ ଢଂରଗ ଖୁବ
ତମ ହାତଲଗା ଗଛଗୁଡ଼ିକୁ
ଖୁବ ଆଦର କରୁଥିଲେ ।
କହୁଥିଲେ—ଇଏ ସବୁ ବନତାର ସ୍ମୃତି ।
ବୋଉ ବି ତମ କଥା କହୁଥିଲା
ସେଇ ପ୍ରସଂଗରେ ॥

ଆମ ସାଇରେ ଭାଲୁକୁଣୀ ହଉଛି ।
ଝୁଂଟୁକୁଣୀ କି ନା ।.
ସାମନାରେ ତ ଦଶହରା ।

॥ ଏକଚାଳିଶି ॥

ପୂଜା ଛୁଟିରେ ତମେ କଟକ
ଆସିବ ନା ?
ଆସିଲେ ଆମ ଗାଁକୁ ଦିନ ଦି'ଟା ପାଇଁ
ଆସଂତ ନାଇ ?
ମୁଁ ଆଉ କୋଉ ବେଶିଦିନ ଏଠି
ରହିବ !
ମାଉସୀ କେମିତି ଅଛଂତି ?
ମୋର ତାଂକୁ ଜୁହାର
କହିଦେବ ॥

ତମ ସାନ ଭଉଣୀ ଟୁନୁ
ଏଥର ମାଟ୍ରିକ ପାସ କଲା ପରା ?
ମୁଁ ତାକୁ ଆଜଯାକେ ଦେଖିଲି ନାଇ ।
କେମିତିକା ଦେଖିବାକୁ ସେ ?
ତମରି ପରି ସୁଂଦରୀ ନା ?
ଖଂଡେ ଫଟୋ ପଠାଂତ ନାଇ
ତମ ସମସ୍ତିଂକର ?
ମୋ ଫଟୋ ଥିଲେ ମୁଁ ପଠାଇଥାଂତି ।
କିଂତୁ ଆମେ ଫଟୋ ପାଇବୁ କାହୁଁ ?
କିଏ ଏଠି ଉଠାଇବ ମ ?
ତରୁଭାଇ ଗୋଟାଏ କାମେରା ତାଂକର
ଜଣେ ସାଂଗଂକଠୁ ଗତ ସାଲେ ମାଗି ଆଣିଥିଲେ ।
ସେଥିରେ ଭଲ ଉଠିଲା ନାଇ ॥

ବିନତା ଅପା ! ତମେ ନିଶ୍ଚୟ ଆସିବ ।
ଆଜକାଲି ତରଂଗ ଭାଇ କେଜାଣି
କାହିଁକି ଶୁଖି କଂଟା ହୋଇ ଯାଉଛଂତି ।
ତାଂକ କଥାବର୍ତ୍ତା, ହାବଭଂଗୀ ବି
କେମିତି ଖାପଛଡ଼ା

॥ ବସ୍ତାଳଣି ॥

ଜଣା ଯାଉଛି ।
ଚାଠ ପଢ଼ା ଯାଶ ସଂସାର-ଭାର୍ଣ
ମୁଂଡେଇବାକୁ ଯାଉଚଂତି ।
ଏଇ ଭିଂଡାରେ କି କଣ କେଜାଣି ॥

ତମେ ଲେଖିଥିଲ—
ତରଂଗ ଅସ୍ତ-ସୂର୍ଯର କବ ।
ଫୁଲ ଫୁଟିବାର ଉତ୍ସବରୁ
ତାର ନିମଂତ୍ରଣ ଆସିଥିଲା ।
ସେ ଫେରାଇ ଦେଲା ।
ତା କଂଠରେ ଝରାଫୁଲର ବଂଦନା ॥

ମୁଁ ଯାର ଅର୍ଥ କିଛି ବୁଝିଲି
ନାଇ ବିନତା ଅପା ।
ଭାଇଂକ ଚିଠିଟା ଦେଖେଇଥିଲି ।
ସେ ପଢ଼ିଲେ,
ଖୁବ୍ ହସିଲେ ପରସ୍ତେ
ଘର ଫଟେଇ ।
ତା'ପରେ ଫେର ଗଂଭୀର
ହୋଇଗଲେ ।
କହିଲେ, ବିନତା କଣ ଗୁଡ଼ାଏ
ଇଆଡ଼୍ ସିଆଡ଼୍ ଲେଖେ !!

ତମେ ଭାଇଂକ ପାଖକୁ ଚିଠି ଦଉଚ ନା ?
ଭାଈ ଉତ୍ତର ଦିଅଂତି ତ !
ସିଏ ଯିମିତି ଭୋଳା ଲୋକ
ହୁଏତ ଚିଠିର ଜବାବ ଦଉ ନ ଥିବେ ।
ତମେ ତାଂକ କଥା ଧରିବ ନାଇଁ ।
ସେ ଯେ ତମକୁ କେଡ଼େ ସୁଖ-ଶାଂତି
ତା ଆମେ ସମସ୍ତେ ଜାଣୁ ॥

॥ ତେପ୍ଟାଳଣି ॥

ଚଅରଦ୍ଧନ ମୋ ବଉଳ ବର
ଗାଁକୁ ଫେରିବେ ।
ତାଂକ ଗାଁରେ ଡାକଘର ଅଛି ।
ମୁଁ ଏ ଚିଠିଟା ତାଂକ ହାତରେ ଦେବ ॥

କଲିକତା ହାଲ୍ ଲେଖିବ ।
ତରୁ ଭାଇ କହୁଥିଲେ ଯେଟି
କ'ଣ ହଣାକଟା ଲଗିଚ ।
ତମେ ସାବଧାନରେ ଚଳୁଥିବ ॥

ଆଉ ଅଧିକା କଣ ଲେଖିବ ?
ମୋ ଦେହଟା ଭଲ ନାଇ ।
କମିତି ଖାଲି ଢୋଁକି ବାଂଧି ହଉଚ ॥

ତରୁ ଭାଇ ଏଇଲାଗେ ଆସି ପଚାରିଗଲେ—
କାହାକୁ ଚିଠିଲେଖା ହଉଚ ମ ?
ଏଡ଼େ ବଡ଼ ଚିଠି ?

କହିଲି—ବନତା ଅପାଂକୁ ।
ସେ ଚିଠିଟାକୁ ଟିକିଏ ଅନେଇଦେଲେ,
ଚାଲିଗଲେ ॥

ହଉ ମୁଁ ରହିଲି ।
ଜୁହାର ହଉଚ ॥

ତମର ସ୍ନେହର ଭଉଣୀ
କେତକୀ ॥

# ଅସ୍ତ ହ୍ରଦର ମାଝି

ଭୁଲିଯାଅ, ଭୁଲିଯାଅ ॥

ଅସ୍ତ-ସିଂଧୁର ହେ ମାଝି କହନା
କେଉଁ ଦେଶେ ତମ୍ଭ ବାସ ?

ମୋ ଘାଟରେ ନିମିଷେ ଭିଡ଼ିଥିଲ ନାଆ ।
ପାଣି ପାଇଁ ଛୁଟେ ହୋଇଥିଲ ଠିଆ ।
ପଚାରିଲି, କହ କିସ ତମ ନାଁ ।
କେଉଁ ଦେଶେ ତମେ ଥାଅ ?

ଭୁଲିଯାଅ, ଭୁଲିଯାଅ ॥

କହିଥିଲ ତମ ମନ ଗମ୍ଭୀରର
ଦେଶରେ ମୋ ଘର,
ଲବଙ୍ଗ ଦ୍ୱୀପର
କନ୍ୟା ତ ତମେ
କହ କହ ସତେ,
ଭଲପାଅ, ଭଲପାଅ ?

ଭୁଲିଯାଅ, ଭୁଲିଯାଅ ।

ତରଂଗ !
ଅଶାନ୍ତକୁ ଭଲପାଅ ।
କିଂତୁ ଭୁଲିଯାଅ ।
ତାକୁ ଆଂକଡ଼ି ଧରି ପଡ଼ି ରହ ନାଇ ॥

॥ ପଣଁଗୃଳଣି ॥

ଜୀବନର ଦୀର୍ଘ ପଥ—
ଅନେକ ବାଙ୍କ
ଅନେକ ଏବେ ବାଙ୍କ ।
ଅନେକ ଦୂର ଆଗେଇ ଯିବାକୁ ହବ ।
ଏଇଠି, ଏଇ ପଥ ମଝିରେ
ପଡ଼ି ରହିଲେ
ପଥର ଦେବତା ଅଭିଶାପ ଦେବେ ॥

ହୋଇ ପାରେ ପଥ ଆମର ଭିନ୍ନ ।
କିଂନ୍ତୁ ଯେତିକ ଦୂର ଆମେ
ଏକା ସଂଗରେ ଚାଲି ପାରିଥିଲେ,
ସେ ସ୍ମୃତି କିଏ ମନରୁ ପୋଛି ଦେଇ ହେବ ?
ପଥ ଶେଷର ଦେବାଳୟ ଏବେ ବି ଅନେକ ଦୂରେ—
କିଂନ୍ତୁ ପଥ ପାର୍ଶ୍ୱର ସେଇ ମୌନ ଫୁଲଗଛ
ମନେରଖ,
ତାକୁ ମନେରଖ ।
ତା ମୂଳରେ ସେଇ କେତୋଟି
ଅମୃତ ମୂହୂର୍ତ୍ତ
ତାକୁ ମନେରଖ,
ମନେରଖ ॥

ଝରା ଫୁଲର ସଜ୍ଜାରେ
କାହିଁକି ତମେ କହିବ ନାଇ
ତମ ପଥପାର୍ଶ୍ୱରେ ହନେ
ଫୁଲ ଫୁଟିଥିଲା ?
କାହିଁକି ତୁମେ ଗାଇବ ନାଇ
ସେଇ ଫୁଲ ଫୁଟିବାର ଜୟ
ତରଂଗ !!

|| ଛନ୍ଦାଳଣି ||

ଏହା ହିଁ ତ ଜୀବନକୁ ଜୟ କରିବାର
କୌଶଳ ।
ଆଜି ତା ନ କରି ଯଦି ରବି ଠାକୁରଂକ

"ଶେଷର କବିତା"ର ଅମିତ୍ ରାୟ ପରି
ଖାଲି ପଥ ମଝି ଫୁଲଗଛ ପାଖରେ
ଅଟକି ଯାଅ,
ତାକୁ ଅତିକ୍ରମ କରି
ଆଗକୁ ଯାଇ ନ ପାର,
ତମ ପଥର ରକ୍ତ-ଧ୍ୱଜା
ଯଦି ସେଇ ଫୁଲଗଛ କଂଟାରେ
ସେଇଠି ଲାଗି ରହେ,
ତମକୁ ଆଗକୁ ଯିବାକୁ ନ ଦିଏ,
ତେବେ ସେ ପରାଜୟ
କଣ କମ୍ ପରାଜୟ ତରଂଗ ?

ଜଗତ ମୋର ଭିନ୍ନ ।
ମୋ ଜଗତର ଧୂସର ମାନଚିତ୍ର
ତୁମେ ବୋଧହୁଏ ଦେଖି ନ ।
କର୍ମ-ତତ୍ପର, ସ୍ରୋତ ଚଂଚଳ, ଅଗ୍ରଗାମୀ
ଜୀବନର ଉଚ୍ଛ୍ୱାସଇ
ମୋ ଜଗତର ପ୍ରାଣଶକ୍ତି ।
ବିଚ୍ଛିନ୍ନ ବାନପ୍ରସ୍ଥ ଜୀବନର
ଶାଂତିର ପରିକଳ୍ପନା,
କିଂବା ଅତୀତର ମୃତ ଜଠର ଭିତରକୁ
କ୍ଲାଂତିର ନେତ୍ରଇରେ ପଳାଇ ଯିବାର
ବୃଥା ଚେଷ୍ଟାରେ
ମୁଁ ସାର୍ଥକତାର ଧାରଣା କରି ପାରେ ନା
ବଂଧୁ ।

॥ ସତଗୃକଣି ॥

ପ୍ରତିହିଂସାର ନିର୍ଜୀବ ଜ୍ୟାମିତିର ଛକ
ମୋ ମନର ତୀବ୍ର ସୂର୍ଯ୍ୟାଗ୍ନିରେ
ଦଗ୍ଧ ଭସ୍ମୀଭୂତ ॥

ଅସ୍ତ ସୂର୍ଯ୍ୟର ନିର୍ଜନ ଉପତ୍ୟକାର କବି
ତରଂଗ !
ତମର ପଥ ମୁଁ ରୋଧ କରିବାକୁ ଚାହେଁନା ।
ତମକୁ ଜୋର କରି ଟାଣିବାକୁ
ଚାହେଁ ନା ମୁଁ ମୋ ଜଗତକୁ ।
ଏ-ଜଗତରେ ସହଜ ସୁଂଦର ଭାବରେ
ତମେ ଚଳି ପାରିବ ନାଇ,
ଏ-ଜଗତ ଯେ ତମର ନୁହେଁ ।
ପଥ ତମର ଚିରଦିନଇ ମୁକ୍ତ ରହୁ ।
ସେଇ ପଥରେ ମୋର ଦୁଇଟୋପା ଆଖିର ଲୁହ—
ନା, ନା,, ଆଶୀର୍ବାଦ
ତରଂଗ !
ମୋର ଶୁଭ କାମନା ॥

କାଲି ରାତିରେ ଛାତ ଉପରେ
ଏକେଲି ବୁଲୁଥିଲି ।
ଚାରିଆଡ଼ ନୀରବ ନିସ୍ତବ୍ଧ ।
ଶେଷ ଟ୍ରାମ୍ ଚାଲିଗଲା ।
ରାସ୍ତାର ଏକ କ୍ଲାଂତ ରିକ୍ସାବାଲା
ଆରୋହୀ ଅପେକ୍ଷାରେ ଧ୍ୟାନରତ,
ଫୁଟ୍‌ପାଥରେ ନୂଆଖାଲିର
ଆଶ୍ରୟପ୍ରାର୍ଥୀ ଦୁଇଜଣ
ହିଂଦୁ ଭିକ୍ଷୁକ ।
ସେଠି ମଳିନ ଗ୍ୟାସ୍ ଆଲୁଅରେ
ସେମାନଂକର ଶୀର୍ଣ୍ଣ ଦେହର ଛାୟା

॥ ଅଠଚାଳିଶି ॥

ଘର୍ମରୁ ଘର୍ମତର ହୋଇଉଠୁଚି ।
ରାସ୍ତାର ବଣାଖଂବ ତଳେ
ଏକ କ୍ଳାଂତ କୁକୁର ॥

ବେଳେବେଳେ ଅକାଶକୁ ଚାହୁଁଥିଲି ।
କି ଭୟଂକର ନୀରବ, ଉଦାସ
ଏଇ ମଧ୍ୟରାତ୍ରିର ଆକାଶ !
କି ଭୀଷଣ ଥଂଡ଼ା ଏଇ ନୀଳ ରାତ୍ରିର
ଛାୟାପଥ ।
ଏକ ମୃତ ତରୁଣୀର
ଶୁଭ୍ର ଉତ୍ତରୀୟ ପରି !
ସପ୍ତର୍ଷିର ଧୂସର ଅନ୍ତରାଳ ମଝିରେ
ମିଟି ମିଟି ହୋଇ ଜଳି ଉଠୁଥିଲି
କ୍ଷୁଦ୍ର ଅରୁଂଧତୀ,
ହଂସ ମେଘର ଫାଂକେ ଫାଂକେ
ନୀଳ ନୀଳ ଆକାଶର ପୁଚ୍ଛେ ପୁଚ୍ଛେ
ନୀଳ ଅରୁଂଧତୀ ॥

ସ୍ତବ୍ଧ, ଅଚେତ, ମୁଗ୍ଧ ଆଖିରେ
ଦେଖୁଥିଲି,
ଦେଖୁଥିଲି ॥

ଆଉ ଦୁଇମାସ ବାକି—
ଷାଠିଏ ଦିନ,
ତା'ପରେ କେଉଁ ଅଜଣା ଦେଶର
ଅଜଣା ଘାଟରେ
ଲାଗିବ ମୋର ଜାହାଜ ।

## ।। ଅଣଗୃଣ ।।

ଏକ ସାଂତାଳ ଗ୍ରାମର ଜଂଗଲ ସ୍ୱରର
ତୀବ୍ର ମୂର୍ଚ୍ଛନା ପରି
ଅପରୋଚପ୍ସର ଘନ କୁହୁଡ଼ଭରା
ଘାଟରେ
ମୋର ଜାହାଜର ମାସ୍ତୁଲ—

ଭୁଲ, ଭୁଲ ।
ଭୁଲଯାଅ ।।

---

# କାକଜ୍ୟୋସ୍ନା

କାକ ଜ୍ୟୋସ୍ନା ! କାକ ଜ୍ୟୋସ୍ନା !
ଜ୍ୟୋସ୍ନା କଣ ମିଛ ?
ସକାଳର ନିର୍ଲଜ ଛଳନା ?

ତଥାପି ଡାକଇ କାକ,
କରଇ ସେ ସକାଳର ଶୁଭ
ସଂବୋଧନ ।
ବଂଧନ, ବଂଧନ ?

ମିଶରର ଏଇ ପିରମିଡ୍
କେତେ ଉଚ୍ଚ ?
କେତେ ଦୂର ?
ତଥାପି ତା ସ୍ୱପ୍ନ ଯତ୍ନେ
ବହୁ ତଳେ, ବହୁ ଦୂରେ
କାର୍ପାସ ଫୁଲରେ ।
ସେ ସ୍ୱପ୍ନ କଣ ମିଛ ?
ତମେ ବିବାହ କର,
ସୁଖୀ ହୁଅ ।
ତମ ବାଲ୍ୟଜୀବନରେ ସେଇ ତୁଳସୀ
ଯାହା କଥା ଥରେ କହୁଥିଲ,
କିଂବା ଅନ୍ୟ କାହାକୁ—

॥ ଏକାବନ ॥

ମୋର ଜଳ-ଯାତ୍ରାର ମିତା
ସହଯାତ୍ରିଣୀ,
ବଂଦନା ମିତ୍ର
କାଲି ସମୁଦ୍ର-ବେଗମ
କଟାଇ ଉଠିଛି ।
ସେ କହୁଥିଲା
ତା' ପ୍ରେମିକର କଥା—
କେଉଁ ସୁଦୂର ପଲ୍ଲି ଗାଁର
ଡାକ୍ତର ସେ—
ବହୁ କଷ୍ଟରେ ବଂଦନାକୁ
ବିଲାତ ପଠାଉଛି—

ବଂଦନା ଏଫ୍ . ଆର୍. ସି. ଏସ୍. ପାଶ
ଫେରି ଆସିଲେ
ଦୁହେଁ ବିବାହ କରିବେ ।
ଆଉ କଲିକତାରେଇ
ପ୍ରାକ୍ଟିସ୍ କରିବେ ।
ତମେ ହସିବ ।
ସହରର ନାଁ ଶୁଣି
ତମେ ଘୃଣା କରିବ ।
ତମର ଜଗତ
ସେ ତ ମୋର ନୁହଁ ।
ତଥାପି ତମେ ସୁଖୀ ହୁଅ ।
ସୁଖୀ ହୁଅ ।
ଜୟୀ ହୁଅ
ତରଂଗ !!

ହଁ, କାଲି କାଏରୋର
ନିର୍ଜନ ବଂଦରରେ ଏକ ବୃଦ୍ଧ ନାବିକ

॥ ବାଉନ ॥

ଘରଚର ପକ୍ଷି ଜୀବନର
ଖୁବ୍ ପ୍ରଶଂସା କଲେ ।
ଘରଖିଆ ପକ୍ଷିର ସେଇ
ଶାନ୍ତ-ତମାଳ-ସୀମା,
ତାର ଅମାବାସ୍ୟା,
ତାର ପୂର୍ଣ୍ଣିମା
ସବୁ ନୂଆ ଅର୍ଥରେ ପୂଣଉଠିଲା
ଏଇ ବୃଦ୍ଧ ନାବକର
କଥା ଜାଲରେ ।
ଅସ୍ଫୁଟ ଅଂଡା ବତାସ,
କି ଆଶ୍ଚର୍ଯ୍ୟ !
କାହାର ହସ ? କାହାର ହସ ?
ଝଡ଼ ଗଲଣି ଥମି ।
ତଥାପି ସେଇ ହସ ।
ମୃତ ମମୀ
ବହୁ ଶତାବ୍ଦୀର ମୃତ ମମୀର ହସ ॥

ଜ୍ୟୋତ୍ସ୍ନା କଣ ମିଛ ?

ଲେଖିତ ଲଂଡନରୁ
ପ୍ରତି ମାସରେ ଚିଠି ଦବାକୁ —

କାହିଁକି ଲେଖିତ ?

ଲଭି ଗଲଣି ଘରଚର ସୀମା—
ନୂଆ ଅଜଣା ସମୁଦ୍ରର ନୂତନ ଦ୍ରାଘିମା
ଭିତର ଦେଇ ଗୃକାଚ—
ଦୂରରେ ଏକ ଅସ୍ପଷ୍ଟ ବନ୍ଦରର ଚିହ୍ନ
ପରିଚୟହୀନ ॥

## ॥ ତେପନ ॥

ସବୁ ନୂଆ ସବୁ ଅଜଣା ।
ତାର ଭିତରେ କିଂତୁ ଖୋଜ ପାଇଚ ।
ମୋର ନୂତନ ଜୀବନର ଠିକଣା ॥

ହେ ଜୀବନ ଜୟୀ ହେଉ ।
ଆଶୀର୍ବାଦ କର,
ଆଶୀର୍ବାଦ କର ।
ଦିଅ ମତେ ତମର ଶୁଭ କାମନା !!

ପିରାମିଡ୍‌ର ଦୀର୍ଘ ରହସ୍ୟ—
ଆଜି ଇତିହାସରେ ଭରା

ଏଇ ମୃତ ମମୀର ଦେଶ,
ଯାହା ନୟନର ଶୂନ୍ୟ, ଯାହା ତରା
କେଉଁ ମୃତ ସଭ୍ୟତାର
କରୁଣ ବେଦନାରେ ପଖଲା !!

ଆହା ! ଦେଖ, ଦେଖ
ମୋ ଅଜାତର ସୁବର୍ଣ୍ଣ ତାରିଖ
କମିତ ଲଭୁଯାଏ !
ମୁଁ ବନ୍ଦ କରି ପାରେ ନା ।
ମୁଁ କାନ୍ଦେ ॥

ଭୁଲ କରେ କାକ ।
ଭୁଲ କରେ ଚକ୍ରବାକ ।
ତଥାପି ସେ ଭୁଲରେ ଅଛି ସାଦୁ
ସେଇ ମଧୁର କ୍ଷଣିକ ମିଥ୍ୟାରେଇ
ଜୀବନ ଭରି ବଂଚିବାର ସ୍ୱାଦୁ ॥

॥ ଚଉବନ ॥

ଜ୍ୟୋତ୍ସ୍ନା କଣ ମିଛ ?
ସକାଳର ଛଳନା— ?

ଅତୀତର କେତୋଟି ତାରିଖ !
ତାର କଣ କିଛି ଅର୍ଥ ନାଇ
ଚିରଂତନର ମୂଲ୍ୟମାନରେ !!
ଖାଲି କଣ ଆବୋରି ତା
ପଡ଼ିଥିବ ଦରମୁଜା
ସ୍ମୃତିର ଫାଇଲ୍ ??

ଜାଗ, ଜାଗ
ଜବାବ ଦିଅ ॥

ବଂଦରରେ ପୁଣି କୋଳାହଳ ।
ମୋର ଚତୁର୍ଦ୍ଦିଗର ନିର୍ଜୀବ ଭୂଗୋଳ
ପ୍ରାଣ ମାଗେ ।
ଅଦୂରେ ନାଇଲ୍ ।

ସକାଳର କରୁଣ ଅର୍ଚ୍ଚନା;
ନିଶାର୍ଦ୍ଧର ସ୍ୱପ୍ନମିଶା
ଏ କାକ-ଜୋଛନା ॥

( ଜାହାଜର ହୁଇସିଲ୍ )

---